ଦାଦା ଭଗବାନ ପ୍ରରୂପିତ

# ତ୍ରିମନ୍ତ୍ର


ମୂଳ ଗୁଜରାଟୀ ସଙ୍କଳନ : ଡା. ନୀରୁବେନ ଅମୀନ

ଅନୁବାଦ : ମହାତ୍ମାଗଣ

**ପ୍ରକାଶକ :** ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
'ଦାଦା ଦର୍ଶନ', ୫, ମମତାପାର୍କ ସୋସାଇଟୀ,
ନବଗୁଜରାଟ କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ - ୩୮୦୦୧୪, ଗୁଜରାଟ
ଫୋନ୍ - (୦୭୯) ୨୭୫୪୦୪୦୮



**ପ୍ରଥମ ସଂସ୍କରଣ :** ୧୦୦୦ ଖଣ୍ଡ ନଭେମ୍ବର ୨୦୧୯

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ 'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ଦ୍ରବ୍ୟ ମୂଲ୍ୟ :** ୨୦ ଟଙ୍କା

**ମୁଦ୍ରକ :** ଅମ୍ବା ଅଫ୍‌ସେଟ୍
B-99, ଇଲେକ୍ଟ୍ରୋନିକ୍ସ GIDC,
K-6 ରୋଡ଼, ସେକ୍ଟର-25, ଗାନ୍ଧୀନଗର-୩୮୨୦୪୪
ଫୋନ୍ - (୦୭୯) ୩୯୮୩୦୩୪୧

# ତ୍ରିମନ୍ତ୍ର




ନମୋ ଅରିହନ୍ତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ୱସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ୱ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ୱେସିଂ,
ପଢମଂ ହବଇ ମଙ୍ଗଲମ୍ ।।୧।।





ଓଁ ନମୋ ଭଗବତେ ବାସୁଦେବାୟ ।।୨।।
ଓଁ ନମଃ ଶିବାୟ ।। ୩ ।।
।। ଜୟ ସଚ୍ଚିଦାନନ୍ଦ ।।



# 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ର ଏକ ସନ୍ଧ୍ୟା, ସମୟ ପାଖାପାଖି ଛ'ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସମ୍ପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

'ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ''ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସମ୍ପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।''

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆର୍ଶୀବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଁଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଲ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଯଦି ଏଠାରେ ଆଶୟ(ହେତୁ)କୁ ବୁଝି ପଢ଼ାଯିବ, ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି *ଇଟାଲିକ୍ସ* ରେ ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ । କିନ୍ତୁ ସେହି ଶବ୍ଦର ସମାନାର୍ଥବୋଧକ ଶବ୍ଦ ବନ୍ଧନୀରେ ଏବଂ ପୁସ୍ତକର ଶେଷରେ ମଧ୍ୟ ଦିଆଯାଇଛି ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

❖ ❖ ❖

# ସମ୍ପାଦକୀୟ

ଅନାଦି କାଳରୁ ପ୍ରତ୍ୟେକ ଧର୍ମର ମୂଳପୁରୁଷ ଯେବେ ବିଦ୍ୟମାନ ଥାଆନ୍ତି, ଯେପରିକି ମହାବୀର ଭଗବାନ, କୃଷ୍ଣ ଭଗବାନ, ରାମ ଭଗବାନ, ସେତେବେଳେ ସେମାନେ ଲୋକଙ୍କୁ ବିଭିନ୍ନ ଧର୍ମର ମତମତାନ୍ତରରୁ ବାହାର କରି ଆତ୍ମଧର୍ମରେ ସ୍ଥିର କରାନ୍ତି । ଏବଂ କାଳକ୍ରମେ ମୂଳପୁରୁଷଙ୍କ ଅନୁପସ୍ଥିତି ହେବାଦ୍ୱାରା ଲୋକେ ଧୀରେ-ଧୀରେ ମତଭେଦରେ ପଡ଼ି ଧର୍ମ-ଗୋଷ୍ଠୀ-ସମ୍ପ୍ରଦାୟରେ ବିଭକ୍ତ ହୋଇଯାନ୍ତି । ଯାହାର ପରିଣାମ ସ୍ୱରୂପ ସୁଖ-ଶାନ୍ତି କ୍ଷୟ ହେବାକୁ ଲାଗେ ।

ଧର୍ମରେ ତୋର-ମୋର କୁ ନେଇ ଝଗଡ଼ା ହୁଏ । ତାହା ଦୂର କରିବା ପାଇଁ ଏହି ନିଷ୍ପକ୍ଷପାତୀ ତ୍ରିମନ୍ତ୍ର ଅଛି । ଏହି ତ୍ରିମନ୍ତ୍ରର ମୂଳ ଅର୍ଥ ଯଦି ବୁଝିବା ତେବେ ସେଥିରେ କୌଣସି ବ୍ୟକ୍ତି ବା ସମ୍ପ୍ରଦାୟ ଅଥବା ଗୋଷ୍ଠୀ ସହ କୌଣସି ସମ୍ବନ୍ଧ ନାହିଁ । ଆତ୍ମଜ୍ଞାନୀଙ୍କ ଠାରୁ ନେଇ ଅନ୍ତତଃ କେବଳଜ୍ଞାନୀ ଏବଂ ନିର୍ବାଣ ପ୍ରାପ୍ତ କରି ମୋକ୍ଷଗତି ପ୍ରାପ୍ତ କରିଥିବା ଏପରି ଉଚ୍ଚ, ଜାଗୃତ ଆତ୍ମାଙ୍କୁ ହିଁ ନମସ୍କାର ଲେଖା ହୋଇଛି । ଯାହାଙ୍କୁ ନମସ୍କାର କରିବା ଦ୍ୱାରା ସଂସାରର ବିଘ୍ନ ଦୂର ହୁଏ, ଅସୁବିଧାରେ ଶାନ୍ତି ରହେ ଏବଂ ମୋକ୍ଷର ଧ୍ୟେୟ ପ୍ରତି ଲକ୍ଷ୍ୟ ହେବାକୁ ଲାଗେ ।

କୃଷ୍ଣ ଭଗବାନ ସାରା ଜୀବନରେ କେବେ ବି କହିନଥିଲେ ଯେ 'ମୁଁ ବୈଷ୍ଣବ ଅବା ମୋର ବୈଷ୍ଣବ ଧର୍ମ ।' ମହାବୀର ଭଗବାନ ସାରା ଜୀବନରେ କେବେ ବି କହିନଥିଲେ ଯେ 'ମୁଁ ଜୈନ ଅବା ମୋର ଜୈନ ଧର୍ମ ।' ଭଗବାନ ରାମଚନ୍ଦ୍ର କେବେ ବି କହିନଥିଲେ ଯେ 'ମୋର ସନାତନ ଧର୍ମ ।' ସମସ୍ତେ ଆତ୍ମାକୁ ଚିହ୍ନି ମୋକ୍ଷରେ ଯିବାର କଥା ହିଁ କହିଛନ୍ତି । ଗୀତାରେ କୃଷ୍ଣ ଭଗବାନ, ଆଗମରେ ତୀର୍ଥଙ୍କରମାନେ ଏବଂ ଯୋଗବଶିଷ୍ଠରେ ରାମଚନ୍ଦ୍ରଜୀଙ୍କୁ ବଶିଷ୍ଠ ମୁନି ଆତ୍ମା ଚିହ୍ନିବାର କଥା ହିଁ କହିଛନ୍ତି । ଜୀବ ଅର୍ଥାତ ଅଜ୍ଞାନ ଦଶା । ଶିବ ଅର୍ଥାତ କଲ୍ୟାଣ ସ୍ୱରୂପ । ଆତ୍ମଜ୍ଞାନ ପ୍ରାପ୍ତି ପରେ ସେହି ଜୀବରୁ ହିଁ ଶିବ ପ୍ରାପ୍ତି ହୁଏ । ଶିବ ଅର୍ଥାତ କୌଣସି ବ୍ୟକ୍ତିଙ୍କ କଥା ନୁହେଁ, ଯିଏ କଲ୍ୟାଣ ସ୍ୱରୂପ ହୋଇଛନ୍ତି, ତାଙ୍କରି କଥା ।

ଆତ୍ମଜ୍ଞାନୀ ପୁରୁଷ ପରମପୂଜ୍ୟ ଶ୍ରୀ ଦାଦା ଭଗବାନ ନିଷ୍ପକ୍ଷପାତୀ ତ୍ରିମନ୍ତ୍ର ପ୍ରଦାନ କଲେ । ଯାହାକୁ ସକାଳ-ସନ୍ଧ୍ୟା ପାଞ୍ଚ-ପାଞ୍ଚ ଥର ଉପଯୋଗପୂର୍ବକ ବୋଲିବାକୁ କହିଛନ୍ତି । ଯାହାଦ୍ୱାରା ସାଂସାରିକ କାର୍ଯ୍ୟ ଶାନ୍ତିପୂର୍ଣ୍ଣ ରୂପେ ସଂପନ୍ନ ହୁଏ । ଏବଂ ଯେତେବେଳେ ବହୁତ ଅସୁବିଧା ଆସେ ସେତେବେଳେ ଯଦି ଘଣ୍ଟା-ଘଣ୍ଟା ଧରି ବୋଲିବା ତେବେ ଅସୁବିଧାରେ ଶୂଳିର ବେଦନା ଛୁଞ୍ଚିରେ ଟଳିଯିବ ।

ନିଷ୍ପକ୍ଷପାତୀ ତ୍ରିମନ୍ତ୍ରର ଶବ୍ଦାର୍ଥ, ଭାବାର୍ଥ ଏବଂ ଏହା କିପରି ହିତକାରୀ ଅଟେ, ଏସବୁର ସମାଧାନ ଦାଦାଶ୍ରୀ ପ୍ରଶ୍ନୋତ୍ତରୀ ରୂପରେ ଦେଇଛନ୍ତି। ସେ ସମସ୍ତ କଥା ପ୍ରସ୍ତୁତ ପୁସ୍ତକରେ ସଙ୍କଳିତ ହୋଇଛି। ଏହି ତ୍ରିମନ୍ତ୍ରର ଆରାଧନା ଦ୍ୱାରା ପ୍ରତ୍ୟେକଙ୍କ ଜୀବନର ବିଘ୍ନ ଦୂର ହୁଏ ଏବଂ ନିଷ୍ପକ୍ଷପାତୀତା ଉତ୍ପନ୍ନ ହୁଏ ।

**- ଡା. ନୀରୂବେନ ଅମୀନ**

# ତ୍ରିମନ୍ତ୍ର

## ତ୍ରିମନ୍ତ୍ର ସମନ୍ୱୟର ରହସ୍ୟ

**ପ୍ରଶ୍ନକର୍ତ୍ତା :** ଏହି ତ୍ରିମନ୍ତ୍ରରେ ତିନି ପ୍ରକାରର ମନ୍ତ୍ର ଅଛି, ଗୋଟିଏ ଜୈନଙ୍କ ମନ୍ତ୍ର, ଗୋଟିଏ ବୈଷ୍ଣବଙ୍କ ମନ୍ତ୍ର, ଗୋଟିଏ ଶୈବଧର୍ମର ମନ୍ତ୍ର, ଏହି ସମନ୍ୱୟର ତାତ୍ପର୍ଯ୍ୟ କ'ଣ ? ଏହାର ରହସ୍ୟ କ'ଣ ?

**ଦାଦାଶ୍ରୀ :** ଭଗବାନ ନିଷ୍ପକ୍ଷ ଅଟନ୍ତି । ଭଗବାନଙ୍କୁ ବୈଷ୍ଣବ ସହ, ଶିବ ସହ ଅବା ଜୈନ ସହ କୌଣସି ସମ୍ବନ୍ଧ ନାହିଁ । ବୀତରାଗଙ୍କୁ ପକ୍ଷପାତ ନଥାଏ । ଯିଏ ପକ୍ଷବାଲା ଅଟନ୍ତି ସେମାନେ 'ଏହା ତୁମର ଏବଂ ଏହା ଆମର' ଏପରି ଭେଦ କରନ୍ତି । ଯିଏ 'ଆମର' କହେ ସେ ଅନ୍ୟଙ୍କୁ 'ତୁମର' କହେ । ଯେଉଁଠି 'ଆମର-ତୁମର' ହୁଏ ସେଠାରେ ରାଗ-ଦ୍ୱେଷ ନିଶ୍ଚିତ ହୁଏ । ତାହା ବୀତରାଗଙ୍କ ମାର୍ଗ ନୁହେଁ । ଯେଉଁଠି ଆମର-ତୁମର ଏପରି ଭେଦ ହୁଏ, ତାହା ବୀତରାଗଙ୍କ ମାର୍ଗ ନୁହେଁ । ବୀତରାଗ ମାର୍ଗ ଭେଦଭାବ ରହିତ ହୋଇଥାଏ । ଏହା ତୁମେ ବୁଝି ପାରୁଛ ?

## ତ୍ରିମନ୍ତ୍ର ଦ୍ୱାରା ପୂର୍ଣ୍ଣ ଫଳର ପ୍ରାପ୍ତି

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ତ୍ରିମନ୍ତ୍ର ତାହା କ'ଣ ସମସ୍ତଙ୍କ ପାଇଁ ଅଟେ ? ଆଉ ଯଦି ସମସ୍ତଙ୍କ ପାଇଁ ଅଟେ ତେବେ ଏପରି କାହିଁକି ?

**ଦାଦାଶ୍ରୀ :** ଏହା ତ ସମସ୍ତଙ୍କ ପାଇଁ ଅଟେ । ଯେଉଁମାନଙ୍କୁ ପାପ ଧୋଇବାର ଅଛି ସେମାନଙ୍କ ପାଇଁ ଉତ୍ତମ ଅଟେ ଆଉ ଯଦି ପାପ ଧୋଇବାର ନଥିବ ତେବେ ତାଙ୍କ ପାଇଁ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଏହି ତ୍ରିମନ୍ତ୍ରରେ ନବକାର ମନ୍ତ୍ର, ବାସୁଦେବ ଏବଂ ଶିବ, ଏହି ତିନି ମନ୍ତ୍ରକୁ ସାଥିରେ ରଖିବାର ପ୍ରୟୋଜନ କ'ଣ ?

**ଦାଦାଶ୍ରୀ :** ପୂରା ଫଳ ଖାଇବା ଆଉ ଛୋଟ ଖଣ୍ଡେ ଖାଇବା, ସେଥିରେ ଅନ୍ତର ନାହିଁ? ଏହି ତ୍ରିମନ୍ତ୍ର ପୂରା ଫଳ ରୂପରେ ଅଛି, ପୂର୍ଣ୍ଣ ଫଳ!

## ମନ୍ତ୍ର-ଜପ, ତଥାପି ସୁଖର ଅଭାବ...

ଋଷଭଦେବ ଭଗବାନ ଗୋଟିଏ ହିଁ କଥା କହିଥିଲେ ଯେ ଏ ଯେଉଁ ମନ୍ଦିର ଅଛି, ତାହା ବୈଷ୍ଣବ ଲୋକେ ବୈଷ୍ଣବଙ୍କର, ଶୈବଧର୍ମ ଲୋକେ ଶିବଙ୍କର, ଜୈନଧର୍ମି ଜୈନଙ୍କର, ନିଜ-ନିଜ ମନ୍ଦିର ବାଣ୍ଟିନେବ କିନ୍ତୁ ଏ ଯେଉଁ ମନ୍ତ୍ର ଅଛି ତାହା ବାଣ୍ଟିବ ନାହିଁ। ମନ୍ତ୍ର ଯଦି ବାଣ୍ଟିବ ତେବେ ତାହାର ସତ୍ୱ(ସାର) ଚାଲିଯିବ। କିନ୍ତୁ ଲୋକେ ତ ମନ୍ତ୍ର ବି ବାଣ୍ଟିନେଲେ ଏବଂ ଏକାଦଶୀ ବି ବାଣ୍ଟିନେଲେ, 'ଏହା ଶିବଙ୍କର ଏବଂ ଏହା ବୈଷ୍ଣବଙ୍କର।' ସେଥିପାଇଁ ଏକାଦଶୀର ମାହାତ୍ମ୍ୟ ନଷ୍ଟ ହୋଇଗଲା ଏବଂ ଏହି ମନ୍ତ୍ରର ମାହାତ୍ମ୍ୟ ମଧ୍ୟ ନଷ୍ଟ ହୋଇଯାଇଛି। ଏ ତିନି ମନ୍ତ୍ର ସାଥିରେ ନରହିବା କାରଣରୁ, ନା ତ ଜୈନ ସୁଖୀ ହେଉଛନ୍ତି, ନା ଅନ୍ୟଲୋକେ ସୁଖୀ ହେଉଛନ୍ତି। ସେଥିପାଇଁ ଏହି ସମନ୍ୱୟ ଭଗବାନଙ୍କ କହିବା ଅନୁସାରେ ଅଟେ।

ଋଷଭଦେବ ଭଗବାନଙ୍କୁ ଧର୍ମର ମୁଖ କୁହାଯାଏ। ଧର୍ମର ମୁଖ ଅର୍ଥାତ ସାରା ସଂସାରକୁ ଧର୍ମର ପ୍ରାପ୍ତି କରାଇବାବାଲା ସେ ନିଜେ ହିଁ ଅଟନ୍ତି! ଏହି ବେଦାନ୍ତ ମାର୍ଗ ମଧ୍ୟ ତାଙ୍କ ଦ୍ୱାରା ସ୍ଥାପିତ ହୋଇଛି ଏବଂ ଏହି ଜୈନ ମାର୍ଗର ସ୍ଥାପନା ମଧ୍ୟ ତାଙ୍କରି ହାତରୁ ହୋଇଛି।

କିଛି ଲୋକ ଯାହାଙ୍କୁ ଆଦମ କହନ୍ତି ନା, ସେ ଆଦମ ଅର୍ଥାତ ଏହି ଆଦିମ ତୀର୍ଥଙ୍କର ହିଁ ଅଟନ୍ତି। ସେମାନେ ଆଦିମ ବଦଳରେ ଆଦମ କହୁଛନ୍ତି। ଅର୍ଥାତ ଏସବୁ ଯେଉଁ ଅଛି, ଏହା ତାଙ୍କ ଦ୍ୱାରା ଦର୍ଶାଯାଇଥିବା ମାର୍ଗ ଅଟେ।

## ସାଂସାରିକ ବିଘ୍ନ ପାଇଁ

**ପ୍ରଶ୍ନକର୍ତ୍ତା :** ଋଷଭଦେବ ଭଗବାନ ମନ୍ଦିର ବାଣ୍ଟିବା ପାଇଁ କହିଲେ, ମାତ୍ର ମନ୍ଦିରରେ ସବୁ ଦେବତା ଏକ ହିଁ ଅଟନ୍ତି ନା?

**ଦାଦାଶ୍ରୀ :** ନା, ସମସ୍ତ ଦେବତା ଭିନ୍ନ-ଭିନ୍ନ ଅଟନ୍ତି। ସମସ୍ତଙ୍କର ଶାସନଦେବ ମଧ୍ୟ ଅଲଗା ଅଟନ୍ତି। ସନ୍ୟସ୍ତମନ୍ତ୍ରର ଶାସନଦେବ ଅଲଗା ଅଟନ୍ତି, ଅନ୍ୟ ସବୁ ମନ୍ତ୍ରର ଶାସନଦେବ ଅଲଗା ଅଟନ୍ତି, ସବୁ ଦେବାଦେବୀ ଅଲଗା-ଅଲଗା ଅଟନ୍ତି।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତିନୋଟିଯାକ ମନ୍ତ୍ର ଏକ ସଙ୍ଗରେ ବୋଲିଲେ କ'ଣ ଲାଭ?

**ଦାଦାଶ୍ରୀ :** ବିଘ୍ନ ଦୂରେଇ ଯାଏ! ବ୍ୟବହାରରେ ଯଦି ବିଘ୍ନ ଆସୁଥିବ ତେବେ

କମ୍ ହୋଇଯାଏ । ପୋଲିସବାଲା ସହ ଯଦି ସାଧାରଣ ଜଣାଶୁଣା ଥିବ ତେବେ ମୁକୁଳି ଯାଆନ୍ତି ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ହଁ, ମୁକୁଳି ଯାଆନ୍ତି ।

**ଦାଦାଶ୍ରୀ :** ତେବେ ଏହି ତ୍ରିମନ୍ତ୍ରରେ ଜୈନ, ବାସୁଦେବ ଏବଂ ଶିବ, ଏହି ତିନି ମନ୍ତ୍ରର ସମନ୍ୱୟ କରିଛି । ଯଦି ତୁମେ ଦେବାଦେବୀଙ୍କ ସହାୟତା ଚାହୁଁଛ ତେବେ ଏହି ତିନି ମନ୍ତ୍ର ସାଥିରେ ବୋଲ । ତାଙ୍କର ଶାସନଦେବ ଥାଆନ୍ତି, ସେ ତୁମର ସହାୟତା କରିବେ । ଏହି ତ୍ରିମନ୍ତ୍ରରେ ଜୈନଙ୍କ ମନ୍ତ୍ର ଅଛି, ତାହା ଜୈନଙ୍କ ଶାସନଦେବଙ୍କୁ ଖୁସି କରିବାର ସାଧନ ଅଟେ । ବୈଷ୍ଣବଙ୍କ ମନ୍ତ୍ର ତାଙ୍କ ଶାସନଦେବଙ୍କୁ ଖୁସି କରିବାର ସାଧନ ଅଟେ ଏବଂ ଶିବଙ୍କର ଯେଉଁ ମନ୍ତ୍ର ଅଛି ତାହା ତାଙ୍କ ଶାସନଦେବଙ୍କୁ ଖୁସି କରିବାର ସାଧନ ଅଟେ । ପ୍ରତ୍ୟେକ ଧର୍ମ ପଛରେ ସର୍ବଦା ଶାସନର ରକ୍ଷା କରିବାବାଲା ଦେବାଦେବୀ ଥାଆନ୍ତି । ଏହି ମନ୍ତ୍ର ବୋଲିବା ଦ୍ୱାରା ସେହି ଦେବାଦେବୀ ଖୁସି ହୋଇଯାନ୍ତି, ଏହାଦ୍ୱାରା ଆମ ବିଘ୍ନ ଦୂର ହୋଇଯାଏ ।

ତୁମକୁ ଯଦି ସଂସାରରେ ବିଘ୍ନ ଥିବ, ତେବେ ଏହି ତିନି ମନ୍ତ୍ରକୁ ଏକ ସଙ୍ଗରେ ବୋଲିବା ଦ୍ୱାରା ତାହା କମ୍ ହୋଇଯିବ । ଯଦି ତୁମର ବହୁତ ସାରା କର୍ମର ଉଦୟ ହୋଇଥିବ, ତେବେ ସେହି ଉଦୟକୁ ନରମ କରିବାର ରାସ୍ତା ଅଟେ ଏହା । ଅର୍ଥାତ ଧୀରେ-ଧୀରେ ମାର୍ଗରେ ଚଢ଼ିବାର ରାସ୍ତା ଅଟେ ଏହା । ଯେଉଁ କର୍ମର ଉଦୟ ଷୋହଳ ଅଣା ଅଟେ, ତାହା ଚାରି ଅଣା ହୋଇଯିବ । ଅତଃ ଏହି ତିନି ମନ୍ତ୍ର ବୋଲିବା ଦ୍ୱାରା ଆସିବାକୁ ଥିବା ସବୁ ବିଘ୍ନ ହାଲୁକା ହୋଇଯିବ । ଯାହାଦ୍ୱାରା ଶାନ୍ତି ହୋଇଯିବ ବିଚରାକୁ !

## ତ୍ରିମନ୍ତ୍ର କରାଏ ନିଷ୍ପକ୍ଷପାତୀ

ବହୁପୂର୍ବରୁ ଏହି ତିନି ମନ୍ତ୍ର ଅଛି, କିନ୍ତୁ ଏହି ଲୋକମାନେ ଲଢ଼େଇ-ଝଗଡ଼ା କରି ମନ୍ତ୍ର ବି ବାଣ୍ଟି ନେଲେ ଯେ, 'ଏହା ଆମର ଏବଂ ତାହା ତୁମର' । ଜୈନମାନେ କେବଳ ନବକାର ମନ୍ତ୍ର ହିଁ ରଖିଲେ ଏବଂ ବାକି ସବୁ ବାହାର କରିଦେଲେ । ବୈଷ୍ଣବ ଲୋକେ ନବକାର ମନ୍ତ୍ର ବାହାର କରିଦେଲେ ଏବଂ ନିଜର ରଖିଲେ । ଅର୍ଥାତ ସମସ୍ତେ ମନ୍ତ୍ର ବାଣ୍ଟି ନେଲେ । ଆରେ, ଏହି ଲୋକମାନେ ଭେଦ କରିବାରେ କିଛି ବାକି ଛାଡ଼ି ନାହାନ୍ତି । ଏବଂ ସେଥିପାଇଁ ହିନ୍ଦୁସ୍ତାନର ଏହି ଦଶା ହୋଇଛି, ଭେଦ ରଖିବା କାରଣରୁ । ଦେଖ, ଏହି ଦେଶର ସ୍ଥିତି ଛିନ୍ନ-ଭିନ୍ନ ହୋଇଗଲାଣି ନା ? ଆଉ ଏ ଭେଦ ଯେଉଁ କରିଛନ୍ତି, ତାହା ଅଜ୍ଞାନୀ ମାନେ ନିଜ ମତକୁ ଠିକ୍ ଦର୍ଶାଇବା ପାଇଁ କରିଛନ୍ତି । ଯେବେ ଜ୍ଞାନୀ ଥାଆନ୍ତି, ସେତେବେଳେ ପୁନର୍ବାର ସବୁ ଏକତ୍ର କରିଦିଅନ୍ତି, ନିଷ୍ପକ୍ଷ କରାନ୍ତି ।

ସେଥିପାଇଁ ତ ମୁଁ ତିନି ମନ୍ତ୍ର ସାଥିରେ ଲେଖିଛି । ଯଦି ଏହି ତିନି ମନ୍ତ୍ରକୁ ସାଥିରେ ବୋଲିବେ ତେବେ ମନୁଷ୍ୟର କଲ୍ୟାଣ ହୋଇଯିବ ।

## ପକ୍ଷପାତ ଯୋଗୁଁ ହିଁ ଅକଲ୍ୟାଣ

**ପ୍ରଶ୍ନକର୍ତ୍ତା :** ଏହି ତ୍ରିମନ୍ତ୍ର କେଉଁ ସଂଯୋଗ କାରଣରୁ ବାଣ୍ଟି ହୋଇଯାଇଥିବ ?

**ଦାଦାଶ୍ରୀ :** ନିଜ ସମ୍ପ୍ରଦାୟ ଚଲାଇବା ପାଇଁ । ଏହା ଆମର ଠିକ୍ ! ଆଉ ଯିଏ ନିଜର ଠିକ୍ ଦର୍ଶାଏ, ସେ ସାମ୍ନାବାଲାକୁ ଭୁଲ୍ କହେ । ଏହି କଥା ଭଗବାନଙ୍କୁ ଠିକ୍ ଲାଗିବ କି ? ଭଗବାନଙ୍କ ପାଇଁ ତ ଉଭୟ ସମାନ ଅଟନ୍ତି ନା ? ଅର୍ଥାତ ନା ତ ନିଜର କଲ୍ୟାଣ ହେଲା ଆଉ ନା ସାମ୍ନାବାଲାର କଲ୍ୟାଣ ହେଲା, ସମସ୍ତଙ୍କର ଅକଲ୍ୟାଣ କଲେ ଏହି ଲୋକମାନେ ।

ତଥାପି ଏହି ସମ୍ପ୍ରଦାୟ ସବୁକୁ ଭାଙ୍ଗିବାର ଆବଶ୍ୟକତା ନାହିଁ, ଭିନ୍ନ-ଭିନ୍ନ ସମ୍ପ୍ରଦାୟ ଜରୁରୀ ଅଟେ । କାରଣ ଫାର୍ଷ୍ଟ ଷ୍ଟାଣ୍ଡାର୍ଡ୍‌ରୁ ନେଇ ମାଟ୍ରିକ ପର୍ଯ୍ୟନ୍ତ ଭିନ୍ନ-ଭିନ୍ନ ଧର୍ମ ଦରକାର, ଅଲଗା-ଅଲଗା ମାଷ୍ଟର ଦରକାର । କିନ୍ତୁ ଏହାର ଅର୍ଥ ଏଇଆ ନୁହେଁ ଯେ ସେକେଣ୍ଡ ଷ୍ଟାଣ୍ଡାର୍ଡ୍‌ବାଲା ଭୁଲ୍ ଅଟେ, ଏହା ନହେବା ଉଚିତ । ମାଟ୍ରିକରେ ଆସିବା ପରେ କେହି ଯଦି କହେ ଯେ 'ଫାର୍ଷ୍ଟ ଷ୍ଟାଣ୍ଡାର୍ଡ୍ ବେକାର ଅଟେ' ତେବେ ତାହା କେତେ ବଡ଼ ମୂର୍ଖତା କୁହାଯିବ ! ସବୁ ଷ୍ଟାଣ୍ଡାର୍ଡ୍ ଠିକ୍ କିନ୍ତୁ ସମାନ ନୁହେଁ ।

## ତ୍ରିମନ୍ତ୍ର, ନିଜ ପାଇଁ ହିଁ ହିତକାରୀ

ଏହା ତ ଏପରି ଯେ ଯଦି ଜଣେ ବ୍ୟକ୍ତି କହେ ଯେ, 'ଏହା ଆମର ବୈଷ୍ଣବ ମତ ଅଟେ ।' ତେବେ ଅନ୍ୟ ଜଣେ କହେ ଯେ, 'ଆମର ମତ ଏହା ।' ଅର୍ଥାତ ଏହି ଭିନ୍ନ-ଭିନ୍ନ ମତବାଲା ଲୋକଙ୍କୁ ଫଶେଇ ଦେଇଛନ୍ତି । ସେତେବେଳେ ଏହି ତ୍ରିମନ୍ତ୍ର ନିଷ୍ପକ୍ଷପାତୀ ମନ୍ତ୍ର ଅଟେ । ଏହା ହିନ୍ଦୁସ୍ତାନର ସବୁ ଲୋକଙ୍କ ପାଇଁ ଅଟେ । ଏଣୁ ଯଦି ଏହି ତ୍ରିମନ୍ତ୍ର ବୋଲିବ ତେବେ ବହୁତ ଲାଭ ହେବ । କାହିଁକିନା ଏଥିରେ ଉତ୍ତମ ମନୁଷ୍ୟ, ଉଚ୍ଚତମ କୋଟୀର ଜୀବଙ୍କୁ ନମସ୍କାର କରିବା ଶିଖାଯାଇଛି । ତୁମେ ବୁଝି ପାରିଲ ଯେ କ'ଣ ଶିଖାଯାଇଛି ?

**ପ୍ରଶ୍ନକର୍ତ୍ତା :** ନମସ୍କାର କରିବା ।

**ଦାଦାଶ୍ରୀ :** ସେମାନଙ୍କୁ ନମସ୍କାର କରିବା ଦ୍ୱାରା ଆମକୁ ଫାଇଦା ହେବ, କେବଳ ନମସ୍କାର କହିଲେ ବି ଫାଇଦା ହେବ । ସେତେବେଳେ ଜଣା ପଡ଼ିବ ଯେ 'ଏହା ତ ମୋ ନିଜ ହିତ ପାଇଁ ଅଟେ ! ଯାହା ନିଜ ହିତ ପାଇଁ ଅଟେ, ତାହାକୁ ଜୈନଙ୍କ

ମନ୍ତ୍ର କିପରି କହିବା ? !' କିନ୍ତୁ ମତାର୍ଥର ରୋଗୀମାନେ କ'ଣ କହନ୍ତି ? 'ଏହା ଆମର ନୁହେଁ ।' ଆରେ, ଆମର କାହିଁକି ନୁହେଁ? ଭାଷା ଆମର, ସବୁ ଆମର ହିଁ ଅଟେ ନା ? ! କ'ଣ ଆମର ନୁହେଁ? କିନ୍ତୁ ଏହା ତ ପାଗଳାମିର କଥା ଅଟେ । ତାହା ତ ଯେତେବେଳେ ଏହାର ଅର୍ଥ ବୁଝାଇବି ସେତେବେଳେ ବୁଝାପଡ଼ିବ ।

## ଏହା ହେଉଛି ତ୍ରିମନ୍ତ୍ର

ସେଥିପାଇଁ ମୁଁ ଏହା ଉଚ୍ଚସ୍ୱରରେ ବୋଲାଏ ନା,

ନମୋ ଅରିହନ୍ତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ୱସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ୱ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ୱେସିଂ,
ପଢମଂ ହବଇ ମଙ୍ଗଲମ୍ ॥ ୧ ॥
ଓଁ ନମୋ ଭଗବତେ ବାସୁଦେବାୟ ॥ ୨ ॥
ଓଁ ନମଃ ଶିବାୟ ॥ ୩ ॥
ଜୟ ସଚ୍ଚିଦାନନ୍ଦ

ଏବେ ଯଦି ଏହି ନବକାର ମନ୍ତ୍ରର ଅର୍ଥ ତୁମକୁ ବୁଝାଇବି ତେବେ ତୁମେ ହିଁ କହିବ ଯେ ଏହା ତ ଆମର ମନ୍ତ୍ର ! ତାହାର ଅର୍ଥ ଯଦି ବୁଝିଯିବ ତେବେ ତୁମେ ଛାଡ଼ିବ ହିଁ ନାହିଁ । ଏହା ତ ତୁମେ ଏପରି ମାନୁଛ ଯେ ଏହା ଶିବଙ୍କ ମନ୍ତ୍ର ଅଥବା ବୈଷ୍ଣବଙ୍କ ମନ୍ତ୍ର, ମାତ୍ର ତାହାର ଅର୍ଥ ବୁଝିବାର ଆବଶ୍ୟକତା ଅଛି । ମୁଁ ତାହାର ଅର୍ଥ ତୁମକୁ ବୁଝାଇଦେବି, ପରେ ତୁମେ ଏପରି କହିବ ହିଁ ନାହିଁ ।

## ନମୋ ଅରିହନ୍ତାଣଂ...

**ପ୍ରଶ୍ନକର୍ତ୍ତା :** 'ନମୋ ଅରିହନ୍ତାଣଂ' ମାନେ କ'ଣ ? ଏହାର ଅର୍ଥ ବିସ୍ତାରରେ ବୁଝାନ୍ତୁ ।

**ଦାଦାଶ୍ରୀ :** 'ନମୋ ଅରିହନ୍ତାଣଂ' । ଅରି ଅର୍ଥାତ ଶତ୍ରୁ ଏବଂ ହନ୍ତାଣଂ ଅର୍ଥାତ

ଯିଏ ତାହାର ହନନ(ସଂଘାର) କରିଛନ୍ତି, ଏଭଳି ଅରିହନ୍ତ ଭଗବାନଙ୍କୁ ନମସ୍କାର କରୁଛି ।

ଯିଏ କ୍ରୋଧ-ମାନ-ମାୟା-ଲୋଭ-ରାଗ୍-ଦ୍ୱେଷ ରୂପୀ ସମସ୍ତ ଶତ୍ରୁର ନାଶ କରିଛନ୍ତି, ସେ ଅରିହନ୍ତ କୁହାଯାନ୍ତି । ଶତ୍ରୁଙ୍କ ନାଶ କରିବା ଠାରୁ ନେଇ ପୂର୍ଣ୍ଣାହୁତି ପର୍ଯ୍ୟନ୍ତ ଅରିହନ୍ତ କୁହାଯାନ୍ତି । ସେ ପୂର୍ଣ୍ଣ ସ୍ୱରୂପ ଭଗବାନ କୁହାଯାନ୍ତି ! ସେ ଅରିହନ୍ତ ଭଗବାନ ପୁଣି ପଛେ କୌଣସି ବି ଧର୍ମର ହୋଇଥାନ୍ତୁ, ଏହି ବ୍ରହ୍ମାଣ୍ଡରେ ପଛେ ଯେଉଁଠି ବି ଥାଆନ୍ତୁ, ତାଙ୍କୁ ନମସ୍କାର କରୁଛି ।

**ପ୍ରଶ୍ନକର୍ତ୍ତା :** ଅରିହନ୍ତ ଦେହଧାରୀ ହୋଇଥାନ୍ତି ?

**ଦାଦାଶ୍ରୀ :** ହଁ, ଦେହଧାରୀ ହିଁ ହୋଇଥାନ୍ତି । ଦେହଧାରୀ ନ ହୋଇଥିଲେ ଅରିହନ୍ତ କୁହାଯିବେ ହିଁ ନାହିଁ । ଅରିହନ୍ତ ଦେହଧାରୀ ଏବଂ ନାମଧାରୀ, ନାମ ସହିତ ଥାଆନ୍ତି ।

**ପ୍ରଶ୍ନକର୍ତ୍ତା :** ଅରିହନ୍ତ ଭଗବାନ ଅର୍ଥାତ ଚବିଶ ତୀର୍ଥଙ୍କରଙ୍କୁ ସମ୍ବୋଧିତ କରି ପ୍ରୟୋଗ କରାହୋଇଛି କି ?

**ଦାଦାଶ୍ରୀ :** ନା, ବର୍ତ୍ତମାନ ତୀର୍ଥଙ୍କର ହିଁ ଅରିହନ୍ତ ଭଗବାନ କୁହାଯାନ୍ତି । ମହାବୀର ଭଗବାନ ତ ସେଠି ମୋକ୍ଷରେ ଯାଇ ବସିଛନ୍ତି । ସେମିତିରେ ଲୋକେ ତ କହନ୍ତି ଯେ 'ଆମର ଚବିଶ ତୀର୍ଥଙ୍କର (ହିଁ ଅରିହନ୍ତ ଅଟନ୍ତି)' ଏବଂ ଗୋଟିଏ ପଟେ ପଢ଼ନ୍ତି ଯେ 'ନମୋ ଅରିହନ୍ତାଣଂ, ନମୋ ସିଦ୍ଧାଣଂ ।' ତେବେ ମୁଁ ସେମାନଙ୍କୁ କହେ ଯେ 'ଏମାନେ ଦୁଇଜଣ (ଅଲଗା) ଅଟନ୍ତି ?' ତେବେ କହନ୍ତି ଯେ, 'ହଁ, ଦୁଇଜଣ ଅଟନ୍ତି ।' ମୁଁ କହିଲି, 'ଅରିହନ୍ତଙ୍କ ବିଷୟରେ ଟିକିଏ କୁହ ।' ତେବେ କୁହନ୍ତି, 'ଏହି ଚବିଶ ତୀର୍ଥଙ୍କର ହିଁ ଅରିହନ୍ତ ଅଟନ୍ତି ।' ଆରେ, ସେମାନେ ତ ସିଦ୍ଧ ହୋଇଗଲେଣି । ସେମାନେ ତ ଏବେ ସିଦ୍ଧକ୍ଷେତ୍ରରେ ଅଛନ୍ତି । ତୁମେ ସିଦ୍ଧଙ୍କୁ ଅରିହନ୍ତ କହୁଛ ? କାହାକୁ ଅରିହନ୍ତ କହୁଥିବେ ଏ ଲୋକେ ?

**ପ୍ରଶ୍ନକର୍ତ୍ତା :** ସେ ସମସ୍ତ ଚବିଶ ତୀର୍ଥଙ୍କର ତ ସିଦ୍ଧ ହୋଇସାରିଛନ୍ତି ।

**ଦାଦାଶ୍ରୀ :** ତେବେ ପୁଣି ତୁମେ ଲୋକଙ୍କୁ କହୁନାହଁ ଯେ ଭାଇ, 'ଯିଏ ସିଦ୍ଧ ହୋଇସାରିଛନ୍ତି, ତାଙ୍କୁ ଅରିହନ୍ତ କାହିଁକି କହୁଛ ? ଏମାନେ ତ ଦ୍ୱିତୀୟ ପଦରେ ସିଦ୍ଧାଣଂରେ ଆସନ୍ତି । ଅରିହନ୍ତଙ୍କ ପଦ ଖାଲି ରହିଲା, ସେଥିଯୋଗୁଁ ଏ ଅସୁବିଧା ହୋଇଛି ନା ! ସେଥିପାଇଁ ମୁଁ କହେ ଯେ ଅରିହନ୍ତଙ୍କୁ ସ୍ଥାପିତ କର, ସୀମନ୍ଧର ସ୍ୱାମୀଙ୍କୁ

ସ୍ଥାପିତ କର । ଏପରି କାହିଁକି କହେ ତୁମେ ବୁଝି ପାରିଲ ? ଏ ଚବିଶ ତୀର୍ଥଙ୍କର ସିଦ୍ଧ କୁହାଯିବେ ନା ଅରିହନ୍ତ ? ଏବେ ସେମାନଙ୍କ ସ୍ଥିତି ସିଦ୍ଧ ଅଟେ ନା ଅରିହନ୍ତ ?

**ପ୍ରଶ୍ନକର୍ତ୍ତା :** ଏବେ ସିଦ୍ଧଗତିରେ ଅଛନ୍ତି ।

**ଦାଦାଶ୍ରୀ :** ସିଦ୍ଧ ଅଟନ୍ତି ନା ? ତୁମକୁ ବିଶ୍ୱାସ ଅଛି ତ ? ଶତ-ପ୍ରତିଶତ ଅଛି ?

**ପ୍ରଶ୍ନକର୍ତ୍ତା :** ହଁ, ଶତ-ପ୍ରତିଶତ ।

**ଦାଦାଶ୍ରୀ :** ସେଥିପାଇଁ ସେମାନଙ୍କୁ ସିଦ୍ଧାଣଂରେ ରଖିଛି । ସିଦ୍ଧାଣଂରେ ପହଞ୍ଚି ଗଲେଣି । ତାଙ୍କ ପରେ ଏବେ ଅରିହନ୍ତାଣଂରେ କିଏ ଅଛନ୍ତି ? ଅରିହନ୍ତାଣଂ ଅର୍ଥାତ୍ ପ୍ରତ୍ୟକ୍ଷ, ହାଜର ଥିବା ଦରକାର । କିନ୍ତୁ ଏବେ ଓଲଟା ମାନ୍ୟତା ଚାଲୁଅଛି । ଚବିଶ ତୀର୍ଥଙ୍କରଙ୍କୁ ଅରିହନ୍ତ କୁହାଯାଉଛି । କିନ୍ତୁ ଯଦି ବିଚାର କରାଯାଏ ତେବେ ସେମାନେ ତ ସିଦ୍ଧ ହୋଇସାରିଲେଣି । ଏଣୁ ଯେବେ 'ନମୋ ସିଦ୍ଧାଣଂ' କହିବା ତେବେ ସେଥିରେ ସେମାନେ ଆସି ହିଁ ଯାଆନ୍ତି । ତେବେ ଅରିହନ୍ତଙ୍କ ବିଭାଗ ବାକି ରହିଯାଏ । ସେଥିପାଇଁ ପୂରା ନମସ୍କାର ମନ୍ତ୍ର ପୂର୍ଣ୍ଣ ହୁଏ ନାହିଁ, ଏବଂ ଅପୂର୍ଣ୍ଣ ରହିବା କାରଣରୁ ତାହାର ଫଳ ପ୍ରାପ୍ତି ହେଉନାହିଁ । ଅର୍ଥାତ ଏବେ ବର୍ତ୍ତମାନ ତୀର୍ଥଙ୍କର ଥିବା ଉଚିତ । ଅର୍ଥାତ ବର୍ତ୍ତମାନ ତୀର୍ଥଙ୍କର ସୀମନ୍ଧର ସ୍ୱାମୀଙ୍କୁ ଯଦି ଅରିହନ୍ତ ମାନିବା, ତେବେଯାଇ ନମସ୍କାର ମନ୍ତ୍ର ପୂର୍ଣ୍ଣ ହେବ । ଚବିଶ ତୀର୍ଥଙ୍କର ତ ସିଦ୍ଧ ହୋଇଗଲେଣି, ସେମାନେ ସମସ୍ତେ 'ନମୋ ସିଦ୍ଧାଣଂ'ରେ ଆସିଯାନ୍ତି । ଯେପରି କେହି କଲେକ୍ଟର ଥିବେ ଏବଂ ସେ ଗଭର୍ଣ୍ଣର ହେବା ପରେ ଆମେ ତାଙ୍କୁ କହିବା ଯେ, 'କଲେକ୍ଟର ସାହେବ ଆସନ୍ତୁ ।' ତେବେ କେତେ ଖରାପ ଲାଗିବ, ନୁହେଁ ?

**ପ୍ରଶ୍ନକର୍ତ୍ତା :** ଲାଗିବ ନିଶ୍ଚିତ ।

**ଦାଦାଶ୍ରୀ :** ସେହିପରି ସିଦ୍ଧଙ୍କୁ ଯଦି ଅରିହନ୍ତ ମାନିବା ତେବେ ବହୁତ ଭାରୀ କ୍ଷତି ହୁଏ । ତାଙ୍କର କ୍ଷତି ହୁଏ ନାହିଁ, କାରଣ ସେ ତ ବୀତରାଗ ଅଟନ୍ତି, କିନ୍ତୁ ଆମର ଭାରୀ କ୍ଷତି ହୁଏ, ଭୟଙ୍କର କ୍ଷତି ହୁଏ ।

## ପହଞ୍ଚେ ପ୍ରତ୍ୟକ୍ଷ ତୀର୍ଥଙ୍କରଙ୍କୁ ହିଁ

ଭଗବାନ ମହାବୀର ଆଦି ସମସ୍ତ ତୀର୍ଥଙ୍କର ମୋକ୍ଷରେ ଯିବା ପାଇଁ ଆମ କାମରେ ଆସିବେ ନାହିଁ, ସେମାନେ ତ ମୋକ୍ଷରେ ଯାଇସାରିଛନ୍ତି ଆଉ ଆମେ ଏହି 'ନମୋ ଅରିହନ୍ତାଣଂ' ବୋଲୁଛେ ତାହା ତାଙ୍କ ସମ୍ବନ୍ଧରେ ନୁହେଁ । ତାଙ୍କ ସମ୍ବନ୍ଧ ତ 'ନମୋ ସିଦ୍ଧାଣଂ' ସହ ଅଛି । ଏହି 'ନମୋ ଅରିହନ୍ତାଣଂ ଯେଉଁ ଆମେ ବୋଲୁଛେ

ତାହା କାହାକୁ ପହଞ୍ଚୁଛି ? ଅନ୍ୟ କ୍ଷେତ୍ରରେ ଯେଉଁଠି-ଯେଉଁଠି ଅରିହନ୍ତ ଅଛନ୍ତି ସେମାନଙ୍କୁ ପହଞ୍ଚୁଛି । ମହାବୀର ଭଗବାନଙ୍କୁ ପହଞ୍ଚୁ ନାହିଁ । ଡାକ ତ ସର୍ବଦା ତାହାର ଠିକଣାରେ ହିଁ ପହଞ୍ଚିବ । ଯେବେକି ଲୋକେ କ'ଣ ବୁଝୁଛନ୍ତି ଯେ ଏହି 'ନମୋ ଅରିହନ୍ତାଣଂ' କହି ଆମେ ମହାବୀର ଭଗବାନଙ୍କୁ ନମସ୍କାର ପହଞ୍ଚାଉଛୁ । ସେ ଚବିଶ ତୀର୍ଥଙ୍କର ତ ମୋକ୍ଷରେ ଯାଇ ବସିଛନ୍ତି, ସେ ତ 'ନମୋ ସିଦ୍ଧାଣଂ' ହୋଇସାରିଲେଣି । ସେମାନେ ଭୂତକାଳୀନ ତୀର୍ଥଙ୍କର କୁହାଯାନ୍ତି । ଅର୍ଥାତ ଆଜି ସିଦ୍ଧ ଭଗବାନ କୁହାଯାନ୍ତି ଏବଂ ଆଜି ଯେଉଁ ବର୍ତ୍ତମାନ ତୀର୍ଥଙ୍କର ଅଛନ୍ତି, ତାଙ୍କୁ ଅରିହନ୍ତ କୁହାଯାଏ ।

## ବୁଦ୍ଧି ଦ୍ୱାରା ମଧ୍ୟ ବୁଝି ହୋଇଯାଏ ଏହି କଥା

**ପ୍ରଶ୍ନକର୍ତ୍ତା :** ଅରିହନ୍ତାଣଂ ତ ବୋଲୁଛୁ, କିନ୍ତୁ ଅରିହନ୍ତ ଏହି ସୀମନ୍ଧର ସ୍ୱାମୀ ଅଟନ୍ତି, ଏହି କଥା ଆଜି ବୁଝିଲି ।

**ଦାଦାଶ୍ରୀ :** ସବୁ ବୋଇତାଲୁ ତରକାରୀରେ ପଡ଼ିଗଲା । ତରକାରୀ ପାଇଁ ଲାଉ କାଟିଲେ ଏବଂ ସେଥିରେ ବୋଇତାଲୁ ପଡ଼ିଗଲା ! ଏହିପରି ଚାଲିଛି... କ'ଣ କରାଯିବ ?

ତୁମକୁ ଜଣେ ଓକିଲ ହିସାବରେ କିପରି ଲାଗିଲା ?

**ପ୍ରଶ୍ନକର୍ତ୍ତା :** ଏହି କଥା ବୁଝିଗଲି, ଦାଦାଜୀ । ଓକିଲ ହିସାବରେ ତ ଠିକ୍ ଅଛି କିନ୍ତୁ ମୁଁ ଜୈନଧର୍ମର ଦୃଢ଼ ଅନୁଗାମୀ ଅଟେ, ସେଥିପଇଁ ମୁଁ ବୁଝିଗଲି । ଆପଣ ଯେଉଁ କଥା କହିଲେ ସେଥିରୁ, ଯଦି କେହି ଜୈନ ହୋଇଥିବ ଏବଂ ଠିକ୍‌ରେ ବୁଝୁଥିବ, ତେବେ ସେ ବୁଝିଯିବ ଯେ ବର୍ତ୍ତମାନ ଯିଏ ବିଚରଣ କରୁଛନ୍ତି, ସେ ହିଁ ତୀର୍ଥଙ୍କର କୁହାଯାନ୍ତି । ସେଥିପାଇଁ ତ ଅରିହନ୍ତଙ୍କୁ ସିଦ୍ଧଙ୍କ ପୂର୍ବରୁ ରଖାଯାଇଛି ।

## ସେ କେଉଁଠି ବି ଥାଆନ୍ତୁ, ତଥାପି ପ୍ରତ୍ୟକ୍ଷ

**ପ୍ରଶ୍ନକର୍ତ୍ତା :** ଲୋକେ ଏପରି ମାନୁଥିବେ ନା ଯେ ସୀମନ୍ଧର ସ୍ୱାମୀ ପରଦେଶରେ ଅଛନ୍ତି ?

**ଦାଦାଶ୍ରୀ :** ତାହା ଦେଖିବ ନାହିଁ ଯେ ବର୍ତ୍ତମାନ ତୀର୍ଥଙ୍କର କେଉଁଠି ଅଛନ୍ତି ? ସେ ପଛେ ପରଦେଶରେ ଥାଆନ୍ତୁ ଅବା କେଉଁଠି ବି ଥାଆନ୍ତୁ । ଏମିତିରେ ଦେଖିବା ତେବେ ସେ ଆଗରୁ ବିହାରରେ ଥିଲେ, ସେଥିରେ ଏହି ଗୁଜରାଟବାଲାଙ୍କୁ କ'ଣ ନେବା-ଦେବା ? ଗାଡ଼ି ନଥିଲା କିଛି ବି ନଥିଲା, ତେବେ ପୁଣି ସେତେବେଳେ କ'ଣ ନେବା-ଦେବା ? କିନ୍ତୁ ନା, ଏଠି ବସି ବସି ତାଙ୍କ ନାମ ଭଜିଚାଲିବା । କେବଳ ଜଣା

ହିଁ ପଡ଼ୁ ଯେ ତୀର୍ଥଙ୍କର ଅଛନ୍ତି । ପଛେ ଯେତେଦୂରରେ ଥାଆନ୍ତୁ କିନ୍ତୁ କେଉଁ ଜାଗାରେ ଏବେ ଅଛନ୍ତି ନା ନାହିଁ ? ତେବେ କହିବା, 'ହଁ, ଅଛନ୍ତି ।' ତେବେ ସେ ବର୍ତ୍ତମାନ ତୀର୍ଥଙ୍କର କୁହାଯିବେ ।

ଆମେ ଯଦି ଅରିହନ୍ତଙ୍କୁ ଦେଖିନଥିବା, ଭଗବାନ ମହାବୀରଙ୍କ ସମୟରେ ତାଙ୍କୁ ଦେଖିନଥିବା, ଭଗବାନ ମହାବୀର ସେଠି (ବିହାରରେ) ଥିବେ ଆଉ ଆମେ ଏଠି (ଗୁଜରାଟରେ) ଥିବା, କିନ୍ତୁ ସେ ଅରିହନ୍ତ ହିଁ କୁହାଯିବେ । ଆମେ ଦେଖି ନାହୁଁ ତେବେ ତାହାଦ୍ୱାରା କିଛି ବିଗିଡ଼ି ଯାଏ ନାହିଁ । ଅର୍ଥାତ୍ ଅରିହନ୍ତଙ୍କୁ ଯଦି ଅରିହନ୍ତ ମାନିବା ତେବେ ବହୁତ ଫଳ ପ୍ରାପ୍ତ ହେବ ନଚେତ ତାହାର (ସିଦ୍ଧଙ୍କୁ ଅରିହନ୍ତ କହିବା) ପରିଶ୍ରମ ତ ବେକାର ଯାଏ । ବିଫଳ ହୋଇଯାଏ, ପରିଶ୍ରମ ବେକାର ଚାଲିଯାଏ । ନବକାର ମନ୍ତ୍ର ଫଳଦାୟୀ ହେଉନାହିଁ, ଏହା ତାହାର କାରଣ ଅଟେ ।

## ତୀର୍ଥଙ୍କର କାହାକୁ କହିବା ?

ତୀର୍ଥଙ୍କର ଭଗବାନ କେବଳଜ୍ଞାନ ସହିତ ଥାଆନ୍ତି । କେବଳଜ୍ଞାନ ତ ଅନ୍ୟମାନଙ୍କୁ ମଧ୍ୟ ଥାଏ, କେବଳି ମାନଙ୍କୁ ମଧ୍ୟ ଥାଏ । କିନ୍ତୁ ତୀର୍ଥଙ୍କର ପାଇଁ ତୀର୍ଥଙ୍କର (ଗୋତ୍ର) କର୍ମର ଉଦୟ ଦରକାର । ଯେଉଁଠି ତାଙ୍କ ପାଦ ପଡ଼େ ସେ ସ୍ଥାନ ତୀର୍ଥ ହୋଇଯାଏ । ଯେଉଁ କାଳରେ ତୀର୍ଥଙ୍କର ଭଗବାନ ଥାଆନ୍ତି, ସେତେବେଳେ ସାରା ଦୁନିଆରେ ତାଙ୍କ ଭଳି ନା ତ କାହାର ପୁଣ୍ୟ ଥାଏ, ନା କାହାର ସେଭଳି ପରମାଣୁ ଥାଏ । ତାଙ୍କ ଶରୀରର ପରମାଣୁ, ତାଙ୍କ ବାଣୀର ପରମାଣୁ, ଆରେ ! ସ୍ୟାଦ୍‌ବାଦ ବାଣୀ ! ଶୁଣିବା ମାତ୍ରେ ସମସ୍ତଙ୍କ ହୃଦୟ ତୃପ୍ତ ହୋଇଯାଏ, ଏପରି ସେ ତୀର୍ଥଙ୍କର ମହାରାଜ !

ଅରିହନ୍ତ ତ ବହୁତ ବଡ଼ ରୂପ ଅଟେ । ସାରା ବ୍ରହ୍ମାଣ୍ଡରେ ସେହି ସମୟରେ ସେଭଳି ପରମାଣୁ କାହାର ନଥାଏ । ସମସ୍ତ ଉଚ୍ଚତମ ପରମାଣୁ କେବଳ ତାଙ୍କରି ଶରୀରରେ ଏକତ୍ର ହୋଇଥାଏ । ତେବେ ସେ ଶରୀର କିପରି ? ସେ ବାଣୀ କିଭଳି ? ସେ ରୂପ କିପରି ? ସେ ସବୁର କଥା କ'ଣ କହିବା ! ତାଙ୍କର ତ କଥା ହିଁ ଅଲଗା ନା ! ଅର୍ଥାତ ତାଙ୍କର ତୁଳନା ତ କରିବ ହିଁ ନାହିଁ, କାହାରି ସହ ମଧ୍ୟ ! ତୀର୍ଥଙ୍କରଙ୍କ ତୁଳନା କାହା ସହ କରାଯାଇ ପାରିବ ନାହିଁ, ସେ ଏପରି ଗଜବ ମୂର୍ତ୍ତି ଅଟନ୍ତି । ଚବିଶ ତୀର୍ଥଙ୍କର ହୋଇଗଲେ, କିନ୍ତୁ ସେମାନେ ସମସ୍ତେ ଗଜବ ମୂର୍ତ୍ତି !

## ବନ୍ଧନ ରହିଲା, ଅଘାତି କର୍ମର

**ପ୍ରଶ୍ନକର୍ତ୍ତା :** ଅରିହନ୍ତ ଭଗବାନ ଅର୍ଥାତ ମୋକ୍ଷ ପୂର୍ବର ସ୍ଥିତି ?

**ଦାଦାଶ୍ରୀ :** ହଁ, ଅରିହନ୍ତ ଭଗବାନ ଅର୍ଥାତ ମୋକ୍ଷ ପୂର୍ବର ସ୍ଥିତି । ଜ୍ଞାନରେ ସିଦ୍ଧ ଭଗବାନଙ୍କ ସମାନ ସ୍ଥିତି ଅଟେ, କିନ୍ତୁ ବନ୍ଧନ ରୂପରେ ଏତିକି ବାକି ରହିଛି । ଯେପରିକି ଦୁଇ ବ୍ୟକ୍ତିଙ୍କୁ ଷାଠିଏ ବର୍ଷର ଦଣ୍ଡ ଶୁଣାଯାଇଥିଲା, ତେବେ ଜଣେ ବ୍ୟକ୍ତିକୁ ଜାନୁଆରୀ ଏକ ତାରିଖରେ ଶୁଣାଯାଇଥିଲା ଏବଂ ଅନ୍ୟ ଜଣଙ୍କୁ ଜାନୁଆରୀ ତିନି ତାରିଖରେ ଶୁଣାଯାଇଥିଲା । ପ୍ରଥମ ଜଣଙ୍କର ଷାଠିଏ ବର୍ଷ ପୂରା ହୋଇଗଲା ଏବଂ ସେ ମୁକୁଳିଗଲା । ଅନ୍ୟ ଜଣକ ଦୁଇଦିନ ପରେ ମୁକୁଳିବାକୁ ଯାଉଛି । କିନ୍ତୁ ସେ ମୁକ୍ତ ହିଁ କୁହାଯିବ ନା ? ଏପରି ଅଟେ ତାଙ୍କ ସ୍ଥିତି !

## ନମୋ ସିଦ୍ଧାଣଂ...

ପୁଣି ଦ୍ୱିତୀୟରେ କିଏ ଅଛନ୍ତି ?

**ପ୍ରଶ୍ନକର୍ତ୍ତା :** 'ନମୋ ସିଦ୍ଧାଣଂ' ।

**ଦାଦାଶ୍ରୀ :** ଏବେ ଯେଉଁମାନେ ଏଠାରୁ ସିଦ୍ଧ ହୋଇସାରିଛନ୍ତି, ଯେଉଁମାନଙ୍କର ଏଠାରୁ ଦେହତ୍ୟାଗ ହୋଇସାରିଛି ଏବଂ ଆଉ ଦେହ ମିଳିବାର ନାହିଁ ଏବଂ ସିଦ୍ଧଗତିରେ ନିରନ୍ତର ସିଦ୍ଧ ଭଗବାନଙ୍କ ସ୍ଥିତିରେ ସ୍ଥିତ ଅଟନ୍ତି, ଏପରି ସିଦ୍ଧ ଭଗବାନଙ୍କୁ ମୁଁ ନମସ୍କାର କରୁଛି ।

ଏବେ ଏଠାରୁ ରାମ ଭଗବାନ, ଋଷଭଦେବ ଭଗବାନ, ମହାବୀର ଭଗବାନ ଆଦି ସମସ୍ତେ ଯେଉଁମାନେ ଷଡ଼ରିପୁକୁ ଜିତି ସିଦ୍ଧଗତିରେ ଗଲେ ଅର୍ଥାତ ନିରନ୍ତର ସିଦ୍ଧଦଶାରେ ଅଛନ୍ତି, ସେମାନଙ୍କୁ ନମସ୍କାର କରୁଛି । ଏଥିରେ କ'ଣ ଅସୁବିଧା, କୁହ ! ଏଥିରେ କିଛି ଅସୁବିଧା ଭଳି ଅଛି ?

ଏବେ ସେ ପ୍ରଥମବାଲା ଉଚ୍ଚ ନା ଦ୍ୱିତୀୟବାଲା, ଏବେ ଯାହା କହିଲ ସେ ଉଚ୍ଚ ? ଏ ତ ଦେହତ୍ୟାଗ କରି ସିଦ୍ଧ ହୋଇସାରିଛନ୍ତି, ପୂର୍ଣ୍ଣତୟା ମୁକ୍ତ ହୋଇଛନ୍ତି । ଏବେ ଏ ଦୁହିଁଙ୍କ ମଧ୍ୟରୁ ଉଚ୍ଚ କିଏ ଏବଂ ନିଚ୍ଚ କିଏ ? ତୁମକୁ କ'ଣ ଲାଗୁଛି ? ବେଶୀ ବିଚାର କଲେ ମିଳିବ ନାହିଁ, ମନକୁ ମନ ସହଜ ରୂପରେ କହି ଦିଅ !

**ପ୍ରଶ୍ନକର୍ତ୍ତା :** ସମସ୍ତେ ଏକ ସମାନ, ନମସ୍କାର କଲୁ ଏଣୁ ସମସ୍ତେ ସମାନ । ଏବେ ସେଥିରେ ଶ୍ରେଷ୍ଠତା ଅଥବା ନ୍ୟୁନତା ଆମେ କିପରି ସ୍ଥିର କରିପାରିବୁ ?

**ଦାଦାଶ୍ରୀ :** କିନ୍ତୁ ଏ ଲୋକମାନେ ପ୍ରଥମ ନମ୍ବର ନମୋ ଅରିହନ୍ତାଣଂକୁ ଲେଖିଲେ ଏବଂ ସିଦ୍ଧାଣଂକୁ ଦ୍ୱିତୀୟ ନମ୍ବର ଲେଖିଲେ, ତାହାର କୌଣସି କାରଣ ତୁମେ ବୁଝିପାରିଲ ?

ସେମାନେ କ'ଣ କହନ୍ତି ଯେ ଯେଉଁମାନେ ସିଦ୍ଧ ହେଲେ ସେମାନେ ସମ୍ପୂର୍ଣ୍ଣ ଅଟନ୍ତି । ସେମାନେ ସେଠାରେ ସିଦ୍ଧଗତିରେ ଯାଇ ବସିଛନ୍ତି, କିନ୍ତୁ ସେମାନେ ଆମର କୌଣସି କାମରେ ଆସନ୍ତି ନାହିଁ । ଆମକୁ ତ ଏହି ଅରିହନ୍ତ କାମରେ ଆସନ୍ତି, ସେଥିପାଇଁ ତାଙ୍କର ପ୍ରଥମ ନମ୍ବର ଏବଂ ପରେ ସିଦ୍ଧ ଭଗବାନଙ୍କର ଦ୍ୱିତୀୟ ନମ୍ବର ।

ଏବଂ ଯେଉଁଠି ସିଦ୍ଧ ଭଗବନ୍ତ ଅଛନ୍ତି, ସେଠାକୁ ଯିବାର ଅଛି । ସେଥିପାଇଁ ତ ସେ ଆମର ଲକ୍ଷ୍ୟ ଅଟନ୍ତି । କିନ୍ତୁ ଉପକାରୀ କିଏ ? ଅରିହନ୍ତ । ସେ ନିଜେ ଛଅ ଶତ୍ରୁଙ୍କୁ ଜିତିଛନ୍ତି ଏବଂ ଆମକୁ ଜିତିବାର ରାସ୍ତା ଦେଖାନ୍ତି, ଆର୍ଶୀବାଦ ଦିଅନ୍ତି । ସେଥିପାଇଁ ତାଙ୍କୁ ପ୍ରଥମେ ରଖିଲେ । ତାଙ୍କୁ ବହୁତ ଉପକାରୀ ମାନିଲେ । ଅର୍ଥାତ ଆମ ଲୋକେ ପ୍ରକଟକୁ ଉପକାରୀ ମାନନ୍ତି ।

## ଅରିହନ୍ତ ଏବଂ ସିଦ୍ଧ ମଧ୍ୟରେ ଅନ୍ତର

**ପ୍ରଶ୍ନକର୍ତ୍ତା :** ସିଦ୍ଧ ଭଗବାନ କୌଣସି ବି ପ୍ରକାରେ ମାନବଜୀବନର କଲ୍ୟାଣ ପାଇଁ ପ୍ରବୃତ୍ତ ହୁଅନ୍ତି କି ?

**ଦାଦାଶ୍ରୀ :** ନା । ସିଦ୍ଧ ତ ତୁମର ଧ୍ୟେୟ ଅଟେ, କିନ୍ତୁ ତଥାପି ସେ ତୁମକୁ କିଛି ହେଲ୍ପ କରିବେ ନାହିଁ । ଏଠାରେ ଯେବେ ଜ୍ଞାନୀ ଥିବେ ଅଥବା ତୀର୍ଥଙ୍କର ଥିବେ ତେବେ ସେମାନେ ତୁମର ହେଲ୍ପ କରିବେ, ସେମାନେ ସାହାଯ୍ୟ କରିବେ, ତୁମର ଭୁଲ ଦେଖାଇବେ, ତୁମକୁ ରାସ୍ତା ଦେଖାଇବେ, ତୁମର ସ୍ୱରୂପ ଦେଖାଇବେ ।

**ପ୍ରଶ୍ନକର୍ତ୍ତା :** ତେବେ ଏ ସିଦ୍ଧ ଦେହଧାରୀ ନୁହଁନ୍ତି ?

**ଦାଦାଶ୍ରୀ :** ସିଦ୍ଧ ଭଗବାନ ଦେହଧାରୀ ହୁଅନ୍ତି ନାହିଁ, ସେ ତ ପରମାତ୍ମା ହିଁ କୁହାଯାନ୍ତି । ଆଉ ଏ ଯେଉଁ ସିଦ୍ଧ ପୁରୁଷ ଥାଆନ୍ତି ନା, ସେମାନେ ତ ମନୁଷ୍ୟ କୁହାଯାନ୍ତି । ତାଙ୍କୁ ଯଦି ତୁମେ ଗାଳି ଦେବ ତେବେ ସେ ସିଦ୍ଧ ପୁରୁଷ ତ ତାଣ୍ଡବ ମଚେଇ ଦେବେ, ନହେଲେ ତୁମକୁ ଅଭିଶାପ ଦେଇଦେବେ ।

**ପ୍ରଶ୍ନକର୍ତ୍ତା :** ଅରିହନ୍ତ ଏବଂ ସିଦ୍ଧ ମଧ୍ୟରେ କ'ଣ ଅନ୍ତର ?

**ଦାଦାଶ୍ରୀ :** ସିଦ୍ଧ ଭଗବାନଙ୍କୁ ଶରୀରର ବୋଝ ଉଠାଇବାକୁ ପଡ଼େ ନାହିଁ । ଅରିହନ୍ତଙ୍କୁ ଶରୀରର ବୋଝ ଉଠାଇ ଚାଲିବାକୁ ପଡ଼େ । ତାଙ୍କୁ ଶରୀର ବୋଝରୂପୀ ଲାଗେ । ଯେମିତି ଏତେ ବଡ଼ ମାଠିଆ ମସ୍ତକରେ ରଖି ବୁଲୁଛନ୍ତି । କିଛି କର୍ମ ବାକି ଅଛି, ତାହା ପୂରା କରିବା ବିନା ସେ ସିଦ୍ଧଗତିରେ ଯାଇପାରିବେ ନାହିଁ । ଅର୍ଥାତ୍ ସେତିକି କର୍ମ ଭୋଗିବା ବାକି ଅଛି ।

## ନମୋ ଆୟରିୟାଣଂ...

ଏ ଦୁଇ ହେଲେ, ଏବେ ?

**ପ୍ରଶ୍ନକର୍ତ୍ତା :** 'ନମୋ ଆୟରିୟାଣଂ' ।

**ଦାଦାଶ୍ରୀ :** ଅରିହନ୍ତ ଭଗବାନ ବତାଇଥିବା *ଆଚାର* (ଆଚରଣ) ଯିଏ ପାଳନ୍ତି ଏବଂ ସେହି *ଆଚାର* ପାଳନ କରାନ୍ତି, ଏପରି ଆଚାର୍ଯ୍ୟ ଭଗବାନଙ୍କୁ ନମସ୍କାର କରୁଛି ।

ସେ ନିଜେ ଆତ୍ମା ପ୍ରାପ୍ତ କରିଛନ୍ତି, ଆତ୍ମଦଶା ପ୍ରକଟ ହୋଇଛି । ସେ ସଂଯମ ସହିତ ଅଟନ୍ତି । କିନ୍ତୁ ଏଠାରେ ଆଜିକାଲି ଯେଉଁ ଆଚାର୍ଯ୍ୟ ଅଛନ୍ତି ସେମାନେ (ପ୍ରକୃତ) ଆଚାର୍ଯ୍ୟ ନୁହଁନ୍ତି । ଏମାନେ ତ, ସାମାନ୍ୟ ଅପମାନ କରିଲେ ତୁରନ୍ତ କ୍ରୋଧିତ ହୋଇଯାନ୍ତି । ଅର୍ଥାତ ଆଚାର୍ଯ୍ୟ ଏପରି ନୁହଁନ୍ତି । ତାଙ୍କ ଦୃଷ୍ଟିରେ ପରିବର୍ତ୍ତନ ଆସି ନାହିଁ । ଦୃଷ୍ଟି ପରିବର୍ତ୍ତନ ହେବା ପରେ କାମ ହେବ । ଯେଉଁ ମିଥ୍ୟାତ୍ୱ ଦୃଷ୍ଟିବାଲା ଅଛନ୍ତି, ସେମାନଙ୍କୁ ଆଚାର୍ଯ୍ୟ କୁହାଯାଇପାରିବ ନାହିଁ । ସମକିତ(ଆତ୍ମଦୃଷ୍ଟି) ହେବା ପରେ ଯେଉଁମାନେ ଆଚାର୍ଯ୍ୟ ହୋଇଛନ୍ତି, ସେମାନେ ଆଚାର୍ଯ୍ୟ କୁହାଯାନ୍ତି ।

ଆଚାର୍ଯ୍ୟ ଭଗବାନ କିଏ ? ଏ ଯେଉଁ ଦେଖାଯାନ୍ତି, ଲୌକିକ ଧର୍ମର ଆଚାର୍ଯ୍ୟ, ସେମାନେ ନୁହଁନ୍ତି । ଯାହାଙ୍କୁ ସୁଖର କୌଣସି ବି ପ୍ରକାର ଇଚ୍ଛା ନାହିଁ ଏବଂ ନିଜ ଆତ୍ମାର ସୁଖ ପାଇଁ ହିଁ *ଆଚାର* ର ପାଳନ କରନ୍ତି । ଆୟରିୟାଣଂ ଅର୍ଥାତ ଯାହାଙ୍କୁ ଆତ୍ମା ଜାଣିବା ପରେ ଆଚାର୍ଯ୍ୟପଣ (ନିଜେ *ଆଚାର* ପାଳନ୍ତି ଏବଂ ଅନ୍ୟମାନଙ୍କୁ ପାଳନ କରାନ୍ତି) ଅଛି, ଏପରି ଆଚାର୍ଯ୍ୟ ଭଗବାନଙ୍କୁ ନମସ୍କାର କରୁଛି । ଏଥିରେ ଅସୁବିଧା ଅଛି କି ? ତୁମକୁ ଏଥିରେ ଆପତ୍ତି ଭଳି କିଛି ଲାଗୁଛି କି ? ପୁଣି ପଛେ କେହି ବି ହେଉ, କୌଣସି ବି ଜାତିର ହେଉ, କିନ୍ତୁ ଯାହାଙ୍କୁ ଆତ୍ମଜ୍ଞାନ ହୋଇଛି, ଏପରି ଆଚାର୍ଯ୍ୟଙ୍କୁ ନମସ୍କାର କରୁଛି ।

ଏବେ ବର୍ତ୍ତମାନ ଏପରି ଆଚାର୍ଯ୍ୟ ଏହି ଜଗତରେ ସବୁ ଜାଗାରେ ନାହାନ୍ତି, କିନ୍ତୁ କିଛି ଜାଗାରେ ଅଛନ୍ତି । କିନ୍ତୁ ଏପରି ଆଚାର୍ଯ୍ୟ ଏଠାରେ ନାହାନ୍ତି । ଆମ ଭୂମିରେ ନାହାନ୍ତି କିନ୍ତୁ ଅନ୍ୟ ଭୂମିରେ ଅଛନ୍ତି । ଏଣୁ ଏ ନମସ୍କାର, ସେ ଯେଉଁଠି ଅଛନ୍ତି ସେଠି ତାଙ୍କୁ ପହଞ୍ଚି ଯାଏ ଏବଂ ଆମକୁ ତୁରନ୍ତ ତାହାର ଫଳ ମିଳେ ।

**ପ୍ରଶ୍ନକର୍ତ୍ତା :** ଏହି ଆଚାର୍ଯ୍ୟମାନଙ୍କଠାରେ ଶକ୍ତି ନଥିଲା ? ଆଚାର୍ଯ୍ୟ ପଦ କେବେ ମିଳେ ?

**ଦାଦାଶ୍ରୀ :** ଏହି ଯେଉଁ ଆଚାର୍ଯ୍ୟ ପଦ ତାହା ମହାବୀର ଭଗବାନଙ୍କ ପରେ

ହଜାର ବର୍ଷ ପର୍ଯ୍ୟନ୍ତ ଠିକ୍‌ରେ ଚାଲିଲା । ଏବଂ ତାହା ପରର ଯେଉଁ ଆଚାର୍ଯ୍ୟ ପଦ ତାହା ଲୌକିକ ଆଚାର୍ଯ୍ୟ ପଦ ଅଟେ । ପରେ ଅଲୌକିକ ଆଚାର୍ଯ୍ୟ ହୋଇ ହିଁ ନାହାନ୍ତି ।

**ପ୍ରଶ୍ନକର୍ତ୍ତା :** ମୁଁ ଅଲୌକିକ ଆଚାର୍ଯ୍ୟଙ୍କ କଥା କହୁଛି ।

**ଦାଦାଶ୍ରୀ :** ଅଲୌକିକ ହେଲେ ହିଁ ନାହିଁ । ଅଲୌକିକ ଆଚାର୍ଯ୍ୟ ତ ଭଗବାନ କୁହାଯାନ୍ତି ।

**ପ୍ରଶ୍ନକର୍ତ୍ତା :** ତେବେ କୁନ୍ଦକୁନ୍ଦାଚାର୍ଯ୍ୟ... ?

**ଦାଦାଶ୍ରୀ :** କୁନ୍ଦକୁନ୍ଦାଚାର୍ଯ୍ୟ ହେଲେ କିନ୍ତୁ ସେ ମହାବୀର ଭଗବାନଙ୍କ ପଶ୍ଚାତ ଛଅଶହ ବର୍ଷପରେ ହୋଇଥିଲେ । କୁନ୍ଦକୁନ୍ଦାଚାର୍ଯ୍ୟ ତ ପୂର୍ଣ୍ଣ ପୁରୁଷ ଥିଲେ । ଆଉ ଏହା ମୁଁ ତ କହୁଛି ଯେ ବିଗତ ପନ୍ଦରଶହ ବର୍ଷ ମଧ୍ୟରେ ଆଚାର୍ଯ୍ୟ ହୋଇ ହିଁ ନାହାନ୍ତି ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହା ତ ଆଚାର୍ଯ୍ୟଙ୍କର ଯେଉଁ କୃତି ଅଛି, ତାହା ପୂର୍ବ ମହାପୁରୁଷଙ୍କ ଆଗମ ହେଉ ଅବା ବେଦାନ୍ତର ସୂତ୍ର ହେଉ, ତାହା ଉପରେ ହିଁ ମୋହର ମାରୁଛି । ସେଥିପାଇଁ ତାଙ୍କୁ ଆଚାର୍ଯ୍ୟ କୁହାଯାଇଛି ।

**ଦାଦାଶ୍ରୀ :** ସେମାନେ ତ କହିବେ, କିନ୍ତୁ ପ୍ରକୃତ ଆଚାର୍ଯ୍ୟ ତ ଆତ୍ମଜ୍ଞାନ ହେବା ପରେ ହିଁ କୁହାଯାନ୍ତି ।

## ଆଚାର୍ଯ୍ୟ, ପ୍ରତାପି ସିଂହ ପରି

ତୀର୍ଥଙ୍କର ଆମର କେଉଁ କାମରେ ଆସନ୍ତି ? ଦର୍ଶନ କାମରେ ଆସନ୍ତି ଏବଂ ଶୁଣିବା କାମରେ ଆସନ୍ତି ! ଶୁଣିବା କେବେ ଯେ ଯଦି ଦେଶନା ଦେଉଥିବେ ସେତେବେଳେ ଶୁଣିବା କାମରେ ଆସନ୍ତି, ନହେଲେ ଦର୍ଶନ କାମରେ ଆସନ୍ତି !

ତାହା ମଧ୍ୟ, ଯାହାକୁ କେବଳ ଦର୍ଶନର ହିଁ ବାକି ରହି ଯାଇଥିବ, ସେ ତାଙ୍କର ଦର୍ଶନ କରି ମୋକ୍ଷରେ ଚାଲିଯାଏ । ତାଙ୍କ ଦର୍ଶନ ଦ୍ୱାରା ହିଁ ପୂର୍ଣ୍ଣାହୁତି ହୋଇଯାଏ । କିନ୍ତୁ ଯିଏ ସେହି ଷ୍ଟେଜ୍ ପର୍ଯ୍ୟନ୍ତ ପହଞ୍ଚି ଥିବ ତା'ପାଇଁ ।

ଯିଏ ଆଚାର୍ଯ୍ୟଙ୍କ ଠାରୁ ସବୁ *ଆଚାର* ଜାଣି ନେଇଛି, ଅର୍ଥାତ ସେହି ଷ୍ଟେଜ୍‌କୁ ଆସିଯାଇଥିବ, ତା'ର ସେଠାରେ ତୀର୍ଥଙ୍କର ଭଗବାନଙ୍କ ଦର୍ଶନରେ ହିଁ କାମ ହୋଇଯାଏ । ଅର୍ଥାତ ଅନ୍ତିମ ପରିପକ୍ୱତା ଆଚାର୍ଯ୍ୟଙ୍କ ଠାରେ ଥାଏ । ଆଚାର୍ଯ୍ୟ ପରିପକ୍ୱ ହୋଇଥାନ୍ତି । ତୀର୍ଥଙ୍କର ମଧ୍ୟ ତାଙ୍କ ମାହାତ୍ମ୍ୟକୁ ସ୍ୱୀକାର କରନ୍ତି । ତୀର୍ଥଙ୍କର ଭଗବାନଙ୍କୁ ଯଦି ପଚରାଯାଏ ଯେ 'ଏହି ପାଞ୍ଚ ଜଣଙ୍କ ମଧ୍ୟରୁ ସବୁଠୁ ବଡ଼ କିଏ?' ତେବେ

ତୀର୍ଥଙ୍କର ଭଗବାନ କହିବେ ଯେ, 'ଆଚାର୍ଯ୍ୟ ଭଗବାନ ବଡ଼ ।' ଏହା ତ ତୀର୍ଥଙ୍କର ଭଗବାନଙ୍କୁ ଅଭିପ୍ରାୟ ମାଗିଲେ, ଏଣୁ ଅଭିପ୍ରାୟ ତ ତାଙ୍କର ହିଁ କୁହାଯିବ ନା !

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏପରି କାହିଁକି କହିବେ ?

**ଦାଦାଶ୍ରୀ :** କାହିଁକିନା ତୀର୍ଥଙ୍କର ଭଗବାନଙ୍କ ଠାରେ ଶହେ ଆଠ ଗୁଣ ଥାଏ ଏବଂ ଆଚାର୍ଯ୍ୟ ମହାରାଜଙ୍କର 'ଏକ ହଜାର ଆଠ' ଗୁଣ ! ଅର୍ଥାତ ସେ ତ ଗୁଣର ଧାମ କୁହାଯାନ୍ତି । ଆଉ ସେ ତ ସିଂହ ସମାନ ହୋଇଥାନ୍ତି । ତାଙ୍କ ଗର୍ଜନରେ ତ ଭିତରେ ସବୁ ଥରି ଉଠେ । ଯେପରି ଯଦି ଶିଆଳ ମାଂସ ଖାଇଥିବ, କିନ୍ତୁ ଯଦି ସିଂହକୁ ଦେଖିଦିଏ ତେବେ ଦେଖୁଦେଖୁ ହିଁ ବାନ୍ତି କରିଦିଏ ! ଆଚାର୍ଯ୍ୟ ମହାରାଜଙ୍କ ପ୍ରତାପ ଏପରି ହୋଇଥାଏ । ହଁ, କେହି ଯଦି ବହୁତ ପାପ କରିଥିବ ତେବେ ତାଙ୍କ ସାମ୍ନାରେ ବାନ୍ତି(ପାପର) କରିଦିଏ । ତୀର୍ଥଙ୍କର ଭଗବାନ ବି କହନ୍ତି ଯେ 'ମୁଁ ମଧ୍ୟ ତାଙ୍କରି ଯୋଗୁଁ ଏ ପର୍ଯ୍ୟନ୍ତ ପହଞ୍ଚିଛି ।' ଅର୍ଥାତ ଆଚାର୍ଯ୍ୟ ଭଗବାନ ତ ବହୁତ ବଡ଼ ଗୁଣଧାମ କୁହାଯାନ୍ତି ।

ଏହି ପାଞ୍ଚ ନବକାର(ନମସ୍କାର) ସର୍ବଶ୍ରେଷ୍ଠ ପଦ ଅଟେ । ସେଥିରେ ମଧ୍ୟ ଆଚାର୍ଯ୍ୟ ମହାରାଜଙ୍କ ବଖାଣ ତ ତୀର୍ଥଙ୍କରଙ୍କୁ ବି କରିବାକୁ ପଡ଼େ । କାହିଁକିନା ତୀର୍ଥଙ୍କର ହେଲେ କିପରି ? (ତାଙ୍କ ସମୟର) ଆଚାର୍ଯ୍ୟ ମହାରାଜଙ୍କ ପ୍ରତାପରୁ !

## ଗଣଧର ପାରି କରନ୍ତି ବୁଦ୍ଧିର ସ୍ତର

**ପ୍ରଶ୍ନକର୍ତ୍ତା :** ତେବେ ଏ ଯେଉଁ ଭଗବାନଙ୍କ ଗଣଧର ଥାଆନ୍ତି, ସେମାନେ ମଧ୍ୟ ଆଚାର୍ଯ୍ୟ ଶ୍ରେଣୀରେ ଆସୁଥିବେ ?

**ଦାଦାଶ୍ରୀ :** ହଁ, ଆଚାର୍ଯ୍ୟ ପଦରେ ହିଁ ଆସନ୍ତି । କାରଣ ଭଗବାନଙ୍କ ତଳେ ଅନ୍ୟ କୌଣସି ପଦ ହିଁ ନାହିଁ । ଗଣଧର ନାମ କାହଁକି ଦିଆଗଲା ? କାହିଁକିନା ସେମାନେ ବୁଦ୍ଧିର ପୂର୍ଣ୍ଣରୂପରେ ଭେଦ କରିଛନ୍ତି । ଆଉ ଆଚାର୍ଯ୍ୟ ମହାରାଜ ସେପରି ହୋଇଥାଇ ବି ପାରନ୍ତି ଏବଂ ନ ହୋଇଥାଇ ବି ପାରନ୍ତି । କିନ୍ତୁ ଗଣଧର ତ ବୁଦ୍ଧିର ସମସ୍ତ ସ୍ତର ପାରି କରିସାରିଥାନ୍ତି ।

ସେ ସ୍ତର ମୁଁ ପାରି କରିଛି । ଗୋଟିଏ ଚନ୍ଦ୍ରର ସ୍ତର ଅର୍ଥାତ ମନର ସ୍ତର ଏବଂ ସୂର୍ଯ୍ୟର ସ୍ତର ଅର୍ଥାତ ବୁଦ୍ଧିର ସ୍ତର, ସେହି ସୂର୍ଯ୍ୟ-ଚନ୍ଦ୍ରର ଯିଏ ଭେଦ କରିଛନ୍ତି ଏପରି ଗଣଧର ଭଗବାନ, ତଥାପି ତୀର୍ଥଙ୍କରଙ୍କ ଆଦେଶରେ ରହନ୍ତି । ମୁଁ ମଧ୍ୟ ସୂର୍ଯ୍ୟ-ଚନ୍ଦ୍ରଙ୍କ ଭେଦ କରି ବସିଛି !

## ହିମ ପରି ତାପ

ଆଚାର୍ଯ୍ୟଙ୍କୁ ପୁରା ଶାସ୍ତ୍ର କଣ୍ଠସ୍ଥ ଥାଏ ଏବଂ ସେ ସବୁକିଛି ଧାରଣ କରିଥାନ୍ତି । ଯେବେକି ଉପାଧ୍ୟାୟ ନିଜେ ପଢ଼ନ୍ତି ଏବଂ ପଢ଼ାନ୍ତି । ଏବେ ଅଭ୍ୟାସ କରୁଥାନ୍ତି କିନ୍ତୁ ସେ ଆତ୍ମା ପ୍ରାପ୍ତ କରିଥାନ୍ତି ଅର୍ଥାତ ସମ୍ୟକତ୍ୱ ପ୍ରାପ୍ତ କରିଥାନ୍ତି । ଏ ଉପାଧ୍ୟାୟ ଅଳ୍ପ ଆଗକୁ ପଢ଼ିଥାନ୍ତି, କିନ୍ତୁ ସେମାନେ ଆଚାର୍ଯ୍ୟ ମହାରାଜଙ୍କ ସାମ୍ନାରେ, 'ଆଜ୍ଞା, ଆଜ୍ଞା' କରୁଥାନ୍ତି । ଯାହାଙ୍କ ଗର୍ଜନରେ ସାଧୁ ଏବଂ ଉପାଧ୍ୟାୟ ବିରାଡ଼ି ଭଳି ହୋଇଯାନ୍ତି, ସେ ଆଚାର୍ଯ୍ୟ ! ଆଉ ସାଧୁ ପଛେ ଯେତେ ବି ଜୋରରେ ଗର୍ଜନ କରୁ ତଥାପି ଆଚାର୍ଯ୍ୟ ମହାରାଜ ତାଙ୍କ ଦ୍ୱାରା ପ୍ରଭାବିତ ହୁଅନ୍ତି ନାହିଁ ।

ଆଚାର୍ଯ୍ୟ ଏପରି ହୋଇଥାନ୍ତି ଯେ ଶିଷ୍ୟଦ୍ୱାରା ଯଦି ଭୁଲ ହୁଏ ତେବେ ତାଙ୍କ ସାମ୍ନାରେ ବାନ୍ତି ହୋଇଯାଏ । କାରଣ ସେ ଭିତରେ ସହନ କରିପାରେ ନାହିଁ । ଆଚାର୍ଯ୍ୟ ଏତେ ଅଧିକ ତାପବାଲା ହୋଇଥାନ୍ତି ତଥାପି ସେ କଠୋର ହୋଇନଥାନ୍ତି । ସେ କ୍ରୋଧ କରନ୍ତି ନାହିଁ । ଏମିତିରେ ହିଁ ତାଙ୍କ କଠୋରତା ଅନୁଭବ କରିହୁଏ, ବହୁତ ତାପ ଲାଗେ ।

ଯେପରି ଏହି ହିମ(ବରଫ) ପଡ଼େ ନା, ସେ ହିମର ତାପ କେତେ ଅଧିକ ହୋଇଥାଏ ? ସେପରି ହିମତାପ କୁହାଯାନ୍ତି, ତଥାପି ତାଙ୍କଠାରେ କ୍ରୋଧ ନଥାଏ । ଯଦି କ୍ରୋଧ-ମାନ-ମାୟା-ଲୋଭ ଥିବ ତେବେ ସେ ଆଚାର୍ଯ୍ୟ କୁହାଯିବେ ହିଁ ନାହିଁ ନା !

ନହେଲେ ଆଚାର୍ଯ୍ୟ ମହାରାଜ ତ କିପରି ହୋଇଥାନ୍ତି ? ! ତାଙ୍କର କ'ଣ କହିବା ! ତାଙ୍କ ବାଣୀ ଶୁଣିଲେ ସେଠାରୁ ଉଠିବାକୁ ମନ ହୁଏ ନାହିଁ ! ଆଚାର୍ଯ୍ୟ ତ ଭଗବାନ ହିଁ କୁହାଯାନ୍ତି ! ସେ କିଛି ଏମିତି-ସେମିତି ନୁହଁନ୍ତି ।

## ଦାଦା ଖଟପଟିଆ ବୀତରାଗ

ମୋର ଏହା ଆଚାର୍ଯ୍ୟ ପଦ ଅଟେ, କିନ୍ତୁ ସମ୍ପୂର୍ଣ୍ଣ ବୀତରାଗ ପଦ ନୁହେଁ । କିନ୍ତୁ ଯଦି ମୋତେ ବୀତରାଗ କହିବାର ଥିବ ତେବେ ଖଟପଟିଆ (କଲ୍ୟାଣ ହେତୁ ଖଟପଟ କରିବାବାଲା) ବୀତରାଗ କହିପାରିବ । ଏପରି ଖଟପଟ ଯେ, 'ତୁମେ ଆସିବ, ଆମେ ସତ୍‌ସଙ୍ଗ କରିବା ଆଉ ତୁମ ପାଇଁ ଏମିତି କରିଦେବି, ସେମିତି କରିଦେବି ।' ସମ୍ପୂର୍ଣ୍ଣ ବୀତରାଗରେ ଏପରି ହୁଏ ନାହିଁ । ଦଖଲ ବି ନାହିଁ ଏବଂ ଝଂଝଟ୍ ବି ନାହିଁ । ତୁମର ହିତ ହେଉଛି ନା ଅହିତ ହେଉଛି, ସେ ଏସବୁ ଦେଖନ୍ତି ନାହିଁ । ସେ ନିଜେ ହିଁ ହିତକାରୀ

ଅଟନ୍ତି । ତାଙ୍କ ହାଓ୍ୱା ହିତକାରୀ, ତାଙ୍କ ବାଣୀ ହିତକାରୀ, ତାଙ୍କ ଦର୍ଶନ ହିତକାରୀ । କିନ୍ତୁ ସେ ତୁମକୁ ଏପରି କହିବେ ନାହିଁ ଯେ 'ତୁମେ ଏପରି କର ।' ଯେବେକି ମୁଁ ତ ତୁମକୁ କହୁଛି ଯେ, 'ମୁଁ ତୁମ ସହ ସତ୍‌ସଙ୍ଗ କରିବି ଏବଂ ତୁମେ କିଛି ମୋକ୍ଷ ଆଡ଼କୁ ବଢ଼ ।' ତୀର୍ଥଙ୍କର ତ ଗୋଟିଏ ହିଁ ସ୍ପଷ୍ଟ ବାକ୍ୟ କହନ୍ତି ଯେ, 'ଚାରି ଗତି ଭୟଙ୍କର ଦୁଃଖଦାୟୀ ଅଟେ । ଏଣୁ ହେ ମନୁଷ୍ୟ, ଏଠାରୁ ମୋକ୍ଷ ଯିବାର ସାଧନ ପ୍ରାପ୍ତ ହୋଇପାରିବ, ଏପରି ତୁମକୁ ମନୁଷ୍ୟତ୍ୱ ପ୍ରାପ୍ତ ହୋଇଛି, ଏଣୁ ମୋକ୍ଷର କାମନା କର' କେବଳ ଏତିକି କହନ୍ତି । ତୀର୍ଥଙ୍କର ନିଜ ଦେଶନାରେ କହନ୍ତି ।

ଏହି କାଳରେ ଏଠାରେ ତୀର୍ଥଙ୍କର ନାହାନ୍ତି ଆଉ ସିଦ୍ଧ ଭଗବାନ ତ ନିଜ ଦେଶ (ସିଦ୍ଧକ୍ଷେତ୍ର)ରେ ହିଁ ରହନ୍ତି । ସେଥିପାଇଁ ଏବେ ତୀର୍ଥଙ୍କରଙ୍କ ରୀପ୍ରେଜେଣ୍ଟେଟିଭ୍ (ପ୍ରତିନିଧି) ରୂପରେ ମୁଁ ଅଛି । ହଁ, ସେ ନାହାନ୍ତି, ଅତଃ ସମସ୍ତ ସତ୍ତା ମୋ ହାତରେ । ତାହାର ଉପଯୋଗ କରୁଛି ଆରାମରେ, କାହାରିକୁ ପଚାରିବା ବିନା ! କିନ୍ତୁ ମୁଁ ତୀର୍ଥଙ୍କରଙ୍କୁ ନିଜ ମସ୍ତକରେ ରଖେ, ତାଙ୍କୁ ଏଠାରେ ବସାଇଛି ନା !

ଉପାଧ୍ୟାୟଙ୍କ ଠାରେ ବିଚାର ଏବଂ ଉଚ୍ଚାର, ଏ ଦୁଇ ହିଁ ଥାଏ ଏବଂ ଆଚାର୍ଯ୍ୟଙ୍କଠାରେ ବିଚାର, ଉଚ୍ଚାର ଏବଂ *ଆଚାର* ଏ ତିନୋଟିଯାକ ଥାଏ । ତାଙ୍କଠାରେ ଏହି ତିନୋଟିର ପୂର୍ଣ୍ଣାହୂତି ହୋଇସାରିଥାଏ, ସେଥିପାଇଁ ସେ ଆଚାର୍ଯ୍ୟ ଭଗବାନ କୁହାଯାନ୍ତି ।

## ନମୋ ଉବଜ୍ଝାୟାଣଂ...

**ପ୍ରଶ୍ନକର୍ତ୍ତା :** 'ନମୋ ଉବଜ୍ଝାୟାଣଂ' ବିସ୍ତାରରେ ବୁଝାନ୍ତୁ ।

**ଦାଦାଶ୍ରୀ :** ଉପାଧ୍ୟାୟ ଭଗବାନ । ତାହାର ଅର୍ଥ କ'ଣ ? ଯାହାଙ୍କୁ ଆତ୍ମାର ପ୍ରାପ୍ତି ହୋଇସାରିଛି ଏବଂ ଯିଏ ନିଜେ ଆତ୍ମା ଜାଣିବା ପଶ୍ଚାତ ସମସ୍ତ ଶାସ୍ତ୍ରର ଅଭ୍ୟାସ କରନ୍ତି ଏବଂ ପୁଣି ଅନ୍ୟମାନଙ୍କୁ ଅଭ୍ୟାସ କରାନ୍ତି, ଏପରି ଉପାଧ୍ୟାୟ ଭଗବାନଙ୍କୁ ନମସ୍କାର କରୁଛି ।

ଉପାଧ୍ୟାୟ ଅର୍ଥାତ ନିଜେ ସବୁକିଛି ବୁଝନ୍ତି ନିଶ୍ଚୟ, ତଥାପି ସମ୍ପୂର୍ଣ୍ଣ *ଆଚାର* ଆସି ନଥାଏ । ସେ ବୈଷ୍ଣବଙ୍କର ହୁଅନ୍ତୁ, ଜୈନଙ୍କର ହୁଅନ୍ତୁ ଅଥବା କୌଣସି ବି ଧର୍ମର ହୁଅନ୍ତୁ କିନ୍ତୁ ଆତ୍ମା ପ୍ରାପ୍ତ କରିଥାନ୍ତି । ଆଜିର ଏ ସାଧୁମାନେ ସବୁ ଏହି ପଦରେ ଆସନ୍ତି ନାହିଁ । କାରଣ ସେମାନେ ଆତ୍ମା ପ୍ରାପ୍ତ କରିନାହାନ୍ତି । ଆତ୍ମା ପ୍ରାପ୍ତ କରିବା ଦ୍ୱାରା କ୍ରୋଧ-ମାନ-ମାୟା-ଲୋଭ ଚାଲିଯାଏ, ଦୁର୍ବଳତା ଚାଲିଯାଏ । ଅପମାନ କରିଲେ ଫଣା ଟେକନ୍ତି ନାହିଁ । ଏମାନେ ତ ଅପମାନ କରିଲେ ଫଣା ଟେକନ୍ତି ନା ? ସେ ଫଣା ଟେକିବାବାଲା ଚଳିବେ ନାହିଁ ସେଠି ।

**ପ୍ରଶ୍ନକର୍ତ୍ତା :** ଆପଣ ଏପରି କହିଲେ ଯେ ଉପାଧ୍ୟାୟ ଜାଣନ୍ତି, କିନ୍ତୁ ସେ କ'ଣ ଜାଣନ୍ତି ?

**ଦାଦାଶ୍ରୀ :** ଉପାଧ୍ୟାୟ ଅର୍ଥାତ ଯିଏ ଆତ୍ମାକୁ ଜାଣନ୍ତି, କର୍ତ୍ତବ୍ୟ ଜାଣନ୍ତି ଏବଂ *ଆଚାର* ବି ଜାଣନ୍ତି । ତଥାପି ତାଙ୍କଠାରେ କିଛି *ଆଚାର* ଥାଏ ଏବଂ କିଛି *ଆଚାର* ଆସିବା ବାକି ଥାଏ । କିନ୍ତୁ ସମ୍ପୂର୍ଣ୍ଣ *ଆଚାର* ପ୍ରାପ୍ତ ନହେବା କାରଣରୁ ସେ ଉପାଧ୍ୟାୟ ପଦରେ ଅଛନ୍ତି । ଅର୍ଥାତ ନିଜେ ଏବେ ପଢୁଛନ୍ତି ଏବଂ ଅନ୍ୟମାନଙ୍କୁ ପଢ଼ାଉଛନ୍ତି ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ *ଆଚାର* ରେ ପୂର୍ଣ୍ଣତା ଆସିନଥାଏ ?

**ଦାଦାଶ୍ରୀ :** ହଁ, ଉପାଧ୍ୟାୟଙ୍କ ଠାରେ *ଆଚାର* ର ପୂର୍ଣ୍ଣତା ନଥାଏ । *ଆଚାର* ର ପୂର୍ଣ୍ଣତା ପରେ ତ ଆଚାର୍ଯ୍ୟ କୁହାଯାନ୍ତି ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଉପାଧ୍ୟାୟ ବି ଆତ୍ମଜ୍ଞାନୀ ହେବା ଦରକାର ?

**ଦାଦାଶ୍ରୀ :** ଆତ୍ମଜ୍ଞାନୀ ନୁହେଁ, ଆତ୍ମପ୍ରତୀତିବାଲା । କିନ୍ତୁ ପ୍ରତୀତିର ଡିଗ୍ରୀ ଟିକିଏ ଅଧିକ ଥାଏ, ପ୍ରତୀତି !

ତା'ପରେ ?

## ନମୋ ଲୋଏ ସବ୍ୱସାହୁଣଂ...

**ପ୍ରଶ୍ନକର୍ତ୍ତା :** 'ନମୋ ଲୋଏ ସବ୍ୱସାହୁଣଂ ।'

**ଦାଦାଶ୍ରୀ :** ଲୋଏ ଅର୍ଥାତ ଲୋକ(ବ୍ରହ୍ମାଣ୍ଡ), ତେବେ ଏହି ଲୋକରେ ଯେତେ ସାଧୁ ଅଛନ୍ତି ସେ ସମସ୍ତ ସାଧୁଙ୍କୁ ମୁଁ ନମସ୍କାର କରୁଛି ।

ସାଧୁ କାହାକୁ କହିବା ? ଯିଏ ଧଳା କପଡ଼ା ପିନ୍ଧନ୍ତି, ଗେରୁଆ କପଡ଼ା ପିନ୍ଧନ୍ତି ସେମାନେ ସାଧୁ କୁହାଯିବେ ନାହିଁ । ଆତ୍ମଦଶା ସାଧେ ସେ ସାଧୁ । ଅର୍ଥାତ ଯାହାଙ୍କୁ ବିଲ୍‌କୁଲ ଦେହାଧ୍ୟାସ ନାହିଁ, ସଂସାରଦଶା-ଭୌତିକଦଶା ନାହିଁ, କିନ୍ତୁ ଆତ୍ମଦଶା ସାଧେ, ସେ ସାଧୁଙ୍କୁ ମୁଁ ନମସ୍କାର କରୁଛି । ଏବେ ଏପରି ସାଧୁ କେଉଁଠି ମିଳିବେ ? ଏବେ ଏପରି ସାଧୁ ଅଛନ୍ତି ? କିନ୍ତୁ ଏହି ବ୍ରହ୍ମାଣ୍ଡରେ ଯେଉଁଠି ବି ଏପରି ସାଧୁ ଅଛନ୍ତି, ସେମାନଙ୍କୁ ନମସ୍କାର କରୁଛି ।

ସଂସାରଦଶାରୁ ମୁକ୍ତ ହୋଇ ଆତ୍ମଦଶା ପାଇଁ ପ୍ରୟାସ କରନ୍ତି ଏବଂ ଆତ୍ମଦଶା ସାଧନ୍ତି, ସେ ସମସ୍ତଙ୍କୁ ନମସ୍କାର କରୁଛି । ବାକି ଯୋଗ ଇତ୍ୟାଦି ଯେଉଁ ସବୁକିଛି କରନ୍ତି ସେସବୁ ସଂସାରଦଶା ଅଟେ । ଆତ୍ମଦଶା, ତାହା ଅସଲ ଜିନିଷ ଅଟେ । କେଉଁ-କେଉଁ ଯୋଗରେ ସଂସାରଦଶା ଅଛି ? ତେବେ କହିବା, ଏକରେ ତ ଦେହଯୋଗ,

ଯେଉଁଥିରେ ଆସନ ଇତ୍ୟାଦି କରିବାକୁ ପଡ଼େ ସେସବୁ ଦେହଯୋଗ କୁହାଯାଏ । ପୁଣି ଦ୍ୱିତୀୟରେ ମନଯୋଗ, ଏଠି ଚକ୍ର ଇତ୍ୟାଦି ଉପରେ ସ୍ଥିରତା କରିବା ତାହା ମନଯୋଗ କୁହାଯାଏ । ଏବଂ ଜପଯୋଗ କରିବା, ତାହା ବାଣୀର ଯୋଗ କୁହାଯାଏ । ଏ ତିନୋଟି ସ୍ଥୁଳ ଶବ୍ଦ ଅଟେ ଏବଂ ତାହାର ଫଳ, ସଂସାର ଫଳ ମିଳେ । ଅର୍ଥାତ ଏଠି ବଙ୍ଗଳା ମିଳେ, ଗାଡ଼ି ମିଳେ । ଏବଂ ଆତ୍ମଯୋଗ ହେଲେ ମୁକ୍ତି ମିଳେ, ସବୁ ପ୍ରକାର ସୁଖ ପ୍ରାପ୍ତ ହୁଏ । ତାହା ଅନ୍ତିମ, ବଡ଼ ଯୋଗ କୁହାଯାଏ । ସବ୍ୱସାହୁଣଂ ଅର୍ଥାତ ଯେଉଁମାନେ ଆତ୍ମଯୋଗ ସାଧନ କରି ବସିଛନ୍ତି, ଏପରି ସମସ୍ତ ସାଧୁଙ୍କୁ ମୁଁ ନମସ୍କାର କରୁଛି ।

ଅର୍ଥାତ ସାଧୁ କିଏ ? ଯାହାଙ୍କୁ ଆତ୍ମାର ପ୍ରତୀତି ହୋଇଛି, ତାଙ୍କର ଗଣତି ମୁଁ ସାଧୁଙ୍କ ମଧ୍ୟରେ କରିଛି । ଅର୍ଥାତ ଏହି ସାହୁଣଂଙ୍କୁ ପ୍ରଥମ ପ୍ରତୀତି ଏବଂ ଉପାଧ୍ୟାୟଙ୍କୁ ବିଶେଷ ପ୍ରତୀତି ଏବଂ ଆଚାର୍ଯ୍ୟଙ୍କୁ ଆତ୍ମଜ୍ଞାନ ଥାଏ । ଆଉ ଅରିହନ୍ତ ଭଗବାନ, ସେ ପୂର୍ଣ୍ଣ ଭଗବାନ ! ଏହି ରୀତିରେ ନମସ୍କାର କରିଛି ।

## ପାଞ୍ଚ ଇନ୍ଦ୍ରିୟ ଶୁଣନ୍ତି, ତେବେ...

**ପ୍ରଶ୍ନକର୍ତ୍ତା :** ଭଗବାନ ନବକାରର ପାଞ୍ଚ ପଦର ଯେଉଁ ରଚନା କରିଛନ୍ତି, ସେଥିରେ ପ୍ରଥମ ଚାରି ତ ଠିକ୍ ଅଛି କିନ୍ତୁ ପଞ୍ଚମରେ ନମୋ ଲୋଏ ସବ୍ୱସାହୁଣଂ ବଦଳରେ ସବ୍ୱସାହୁଣଂ କାହିଁକି ରଖିଲେ ନାହିଁ ?

**ଦାଦାଶ୍ରୀ :** ତେବେ ଚିଠି ଲେଖ ତୁମେ ! ଏପରି ଅଟେ, ସେ ଯାହା କହିଛନ୍ତି, ତାହା ଯେମିତିକୁ ସେମିତି, ମାତ୍ରା ସହିତ ବୋଲିବା ପାଇଁ କହିଛନ୍ତି । କାରଣ ତାଙ୍କ ଶ୍ରୀମୁଖରୁ ବାହାରିଥିବା ବାଣୀ ଅଟେ । ତାହାର ଗୁଜରାଟୀ ଅନୁବାଦ କରିବା ପାଇଁ ମନା କରିଛନ୍ତି । ଭାଷା ପରିବର୍ତ୍ତନ କରିବ ନାହିଁ । ଅର୍ଥାତ ତାଙ୍କ ଶ୍ରୀମୁଖରୁ ବାହାରିଛି, ମହାବୀର ଭଗବାନଙ୍କ ଶ୍ରୀମୁଖରୁ ଆଉ ଯେବେ ସେ ବାଣୀ ବୋଲିବା ନା, ତେବେ ସେ ପରମାଣୁ ହିଁ ଏପରି ସଂଯୋଜିତ ହୁଏ ଯେ ଲୋକଙ୍କୁ ଅଲୌକିକତା ଉତ୍ପନ୍ନ ହୁଏ । କିନ୍ତୁ ଏମାନେ ତ ଏପରି ବୋଲନ୍ତି ଯେ ନିଜକୁ ବି ଶୁଣାଯାଏ ନାହିଁ, ତେବେ ପୁଣି ଫଳ ମଧ୍ୟ ସେହିପରି ମିଳିବ ନା ! ନିଜକୁ ଫଳ ଜଣା ପଡ଼ିବ ନାହିଁ । ନହେଲେ ପାଞ୍ଚ ଇନ୍ଦ୍ରିୟ ଶୁଣନ୍ତି ଏପରି ବୋଲିବା ଦ୍ୱାରା ପ୍ରକୃତ ଫଳ ପ୍ରାପ୍ତ ହୁଏ । ହଁ, ଆଖି ବି ଦେଖୁଥାଏ, କାନ ବି ଶୁଣୁଥାଏ, ନାକ ଶୁଙ୍ଘୁଥାଏ...

**ପ୍ରଶ୍ନକର୍ତ୍ତା :** ଆପଣ, କିଛି ରହସ୍ୟମୟ ବାଣୀ କହିଲେ !

**ଦାଦାଶ୍ରୀ :** ହଁ, ନବକାର ଏମିତି ହିଁ ବୋଲିଚାଲିବା ତେବେ କାନ ଶୁଣେ

ନାହିଁ, କାନ ଭୋକିଲା ରହେ, ଆଖି ଭୋକିଲା ରହେ, କେବଳ ଜିଭ ହିଁ ଏକୁଟିଆ ପାଟିରେ ଘୁରି ବୁଲୁଥାଏ, ତେବେ ପୁଣି କିଭଳି ଫଳ ମିଳିବ? ଅର୍ଥାତ ପାଞ୍ଚ ଇନ୍ଦ୍ରିୟ ଯେବେ ପ୍ରସନ୍ନ ହେବେ, ତେବେ ନବକାର ମନ୍ତ୍ର ପରିଣମିତ ହେଲା କୁହାଯିବ । ମନ୍ତ୍ର ବୋଲୁଛେ ତ ନିଶ୍ଚୟ କିନ୍ତୁ କାନ ଶୁଣେ, ଆଖି ଦେଖେ, ନାକ ସୁଗନ୍ଧ ଅନୁଭବ କରେ, ସେହି ସମୟରେ ଚମଡ଼ା (ଦେହ)ରେ ସ୍ପର୍ଶ ହେବ ତାହାର, ଏପରି ହେବା ଉଚିତ ଏ ସବୁ । ସେଥିପାଇଁ ତ ମୁଁ ଏହି ତ୍ରିମନ୍ତ୍ର ଉଚ୍ଚସ୍ୱରରେ ବୋଲାଏ !

## କେବଳ ସାଧକ, ନୁହେଁ ବାଧକ

ଲୋକମାନେ ଯେତିକି ନିଶ୍ଚିତ କରିଛନ୍ତି, ବ୍ରହ୍ମାଣ୍ଡ କେବଳ ସେତିକି ନୁହେଁ । ବ୍ରହ୍ମାଣ୍ଡ ବହୁତ ବଡ଼, ବିଶାଳ ଅଟେ । ସେ ସମସ୍ତ ସାଧୁଙ୍କୁ ନମସ୍କାର କରୁଛି ।

ଯିଏ ଆତ୍ମଦଶା ସାଧିବା ପାଇଁ ସାଧନା କରନ୍ତି, ସେ ସାଧୁ । ଅର୍ଥାତ ଯିଏ ସଂସାରର ସ୍ୱାଦ ପାଇଁ ସାଧନା କରନ୍ତି, ସେମାନେ ସାଧୁ ନୁହଁନ୍ତି । ସ୍ୱାଦ ପାଇଁ, ମାନ ପାଇଁ, କୀର୍ତ୍ତି ପାଇଁ କରାଯାଉଥିବା ସାଧନା ସବୁ ଅଲଗା ଅଟେ । ଆତ୍ମାର ସାଧନାରେ ସେସବୁ ନଥାଏ । ସେଭଳି ସମସ୍ତ ସାଧୁଙ୍କୁ ନମସ୍କାର କରୁଛି । ଅନ୍ୟମାନେ ସବୁ ସାଧୁ କୁହାଯାନ୍ତି ନାହିଁ ।

ଯିଏ ଆତ୍ମଦଶା ସାଧେ, ସେ ସାଧୁ କୁହାଯାଏ । ସେ ସମସ୍ତଙ୍କୁ ନମସ୍କାର କରୁଛି । ଅନ୍ୟମାନେ ସବୁ ସାଧୁ କୁହାଯାନ୍ତି ନାହିଁ । ଦେହ ଦଶା, ଦେହର ପ୍ରତିପତ୍ତି ପାଇଁ, ଦେହର ସୁଖ ପାଇଁ ଇଚ୍ଛା ରଖନ୍ତି, କିନ୍ତୁ ତାହା ଚଳିବ ନାହିଁ ନା! ହିନ୍ଦୁସ୍ତାନରେ କଦାଚିତ ଜଣେ ଅଧେ ହିଁ ଏପରି ସନ୍ଥ ଥିବେ । ଜଣେ ବି ନଥିବେ । ଏପରି ସାଧୁ ଅନ୍ୟ କ୍ଷେତ୍ରରେ ଅଛନ୍ତି । ସେମାନେ ଅନ୍ୟ ଜାଗାରେ ଅଛନ୍ତି, ତେବେ ଆମ ନମସ୍କାର ତାଙ୍କ ପାଖରେ ପହଞ୍ଚେ ଆଉ ସେତେବେଳେ ଆମକୁ ଫଳ ମିଳେ ।

**ପ୍ରଶ୍ନକର୍ତ୍ତା :** ଲୋଏ ଅର୍ଥାତ କ'ଣ ?

**ଦାଦାଶ୍ରୀ :** ନମୋ ଲୋଏ ସବ୍ୱସାହୁଣଂ । ଲୋଏ ଅର୍ଥାତ ଲୋକ(ବ୍ରହ୍ମାଣ୍ଡ) । ଏହି ଲୋକ ବ୍ୟତୀତ ଅଲଗା, ଅଲୋକ ଅଛି; ସେଠାରେ କିଛି ବି ନାହିଁ । ଅର୍ଥାତ ଲୋକରେ ଯେଉଁ ସବୁ ସାଧୁ ଅଛନ୍ତି, ସେମାନଙ୍କୁ ନମସ୍କାର କରୁଛି ।

**ପ୍ରଶ୍ନକର୍ତ୍ତା :** ଆତ୍ମଦଶା ସାଧିବା ଦ୍ୱାରା ଆତ୍ମାର ଜ୍ଞାନ ହୁଏ ?

**ଦାଦାଶ୍ରୀ :** ହଁ ।

**ପ୍ରଶ୍ନକର୍ତ୍ତା :** ଏବଂ ଆତ୍ମଦଶା ସାଧିବା ଦ୍ୱାରା ଆତ୍ମାର ଅନୁଭବ ହୁଏ ?

**ଦାଦାଶ୍ରୀ :** ସେ ଆତ୍ମଦଶା ସାଧେ ଅର୍ଥାତ, ଅନୁଭବ ଆଡ଼କୁ ବଢ଼ିବାକୁ ଲାଗେ, ସାଧନା କରେ । ସାଧନାର ଅର୍ଥ କ'ଣ ? 'ଆତମ୍ ଭାବନା କରତା ଜୀବ ଲହେ କେବଲଜ୍ଞାନ ରେ !' କିନ୍ତୁ ଆତ୍ମଭାବନା ତା'କୁ ପ୍ରାପ୍ତ ହେବା ଦରକାର ନା ? ମୁଁ ଏଠି ଯେଉଁ ଜ୍ଞାନ ଦିଏ, ତାହା ଆତ୍ମଦଶାର ହିଁ ପ୍ରାପ୍ତି କରାଏ ଏବଂ ତାହା ପ୍ରାପ୍ତ ହେବା ପରେ ତା'କୁ ପୁଣି ଆଗର ଦଶା ପ୍ରାପ୍ତ ହୁଏ ଏବଂ ସେଥିରେ ଯେମିତି-ଯେମିତି କେହି ଆଗକୁ ବଢ଼େ ତା'କୁ ଉପାଧ୍ୟାୟ ଦଶା ପ୍ରାପ୍ତ ହୁଏ । ଏଠାରେ ଏହି ସମୟରେ ଅନ୍ତିମ କେଉଁ ପଦ ପର୍ଯ୍ୟନ୍ତ ପହଞ୍ଚି ପାରିବା ? ଆଚାର୍ଯ୍ୟ ପଦ ପର୍ଯ୍ୟନ୍ତ ପହଞ୍ଚି ପାରିବା । ତାହାଠୁ ଆଗକୁ ଯାଇପାରିବା ନାହିଁ ।

**ପ୍ରଶ୍ନକର୍ତ୍ତା :** ଆମେ କିପରି ସ୍ଥିର କରିପାରିବୁ ଯେ ସେ ଆତ୍ମଦଶା ସାଧୁଛନ୍ତି ନା ନାହିଁ ?

**ଦାଦାଶ୍ରୀ :** ହଁ, ଆମେ ତାଙ୍କର ବାଧକ ଗୁଣ ଦେଖିନେବା ତେବେ ଜଣା ପଡ଼ିଯିବ । ଆତ୍ମଦଶା ସାଧିବାବାଲା ମନୁଷ୍ୟ କେବଳ ସାଧକ ହିଁ ହୋଇଥିବ, ବାଧକ ନୁହେଁ । ସାଧୁ ସର୍ବଦା ସାଧକ ହୋଇଥାନ୍ତି ଆଉ ବର୍ତ୍ତମାନ ଏ ଯେଉଁ ସାଧୁ ଅଛନ୍ତି ସେମାନେ ଏହି ଦୁଷମକାଳ କାରଣରୁ ସାଧକ ନୁହଁନ୍ତି, ସାଧକ-ବାଧକ ଅଟନ୍ତି । ସାଧକ-ବାଧକ ଅର୍ଥାତ ସ୍ତ୍ରୀ-ପିଲାଛୁଆଙ୍କୁ ଛାଡ଼ି ତପ-ତ୍ୟାଗ ଇତ୍ୟାଦି କରନ୍ତି । ଆଜି ସାମୟିକ-ପ୍ରତିକ୍ରମଣ କରି ଶହେ ଟଙ୍କା ଉପାର୍ଜନ କରନ୍ତି କିନ୍ତୁ ଶିଷ୍ୟ ସହିତ ଝାମେଲା ହେଲେ ତା'ପ୍ରତି ଉଗ୍ର ହୋଇଯାନ୍ତି, ସେତେବେଳେ ଦେଢ଼ଶହ ଟଙ୍କା ହରାଇ ଦିଅନ୍ତି, ସେଥିପାଇଁ ତାହା ବାଧକ ଅଟେ । ଆଉ ପ୍ରକୃତ ସାଧୁ କେବେ ବାଧକ ହୁଏ ନାହିଁ, ସର୍ବଦା ସାଧକ ହିଁ ଥାଏ । ଯେଉଁମାନେ ସାଧକ ହୋଇଥାନ୍ତି, ସେମାନେ ହିଁ ସିଦ୍ଧଦଶା ପ୍ରାପ୍ତ କରିପାରିବେ ।

ଆଉ ଏମାନେ ତ ବାଧକ ଅଟନ୍ତି, ଏମାନଙ୍କୁ ହଇରାଣ କରିବା ମାତ୍ରେ ଚିଡ଼ିବାରେ ବିଳମ୍ବ କରନ୍ତି ନାହିଁ ନା ! ଅର୍ଥାତ ଏମାନେ ସାଧୁ ନୁହେଁ, ତ୍ୟାଗୀ କୁହାଯାନ୍ତି । ଆଜିକାଲିର ସମୟ ହିସାବରେ ଏମାନଙ୍କୁ ସାଧୁ କହିପାରିବା । ବାକି, ସାଧୁ-ତ୍ୟାଗୀଙ୍କର କ୍ରୋଧ ତ ଖୋଲାଖୋଲି ନଜର ଆସେ ନା ! ଆରେ, ଶୁଣା ବି ଯାଏ ! ଯେଉଁ କ୍ରୋଧ ଶୁଣାଯାଏ ସେ କ୍ରୋଧ କିପରି ହୋଇଥିବ ?

**ପ୍ରଶ୍ନକର୍ତ୍ତା :** ଅନନ୍ତାନୁବନ୍ଧୀ ?

**ଦାଦାଶ୍ରୀ :** ହଁ, ଯେଉଁ କ୍ରୋଧ ଅନ୍ୟକୁ ଭୟଭୀତ କରେ, ଆମକୁ ଶୁଣାଯାଏ (ଦେଖାଯାଏ), ତାହା ଅନନ୍ତାନୁବନ୍ଧୀ କୁହାଯାଏ ।

## ଓଁ ର ସ୍ୱରୂପ

**ପ୍ରଶ୍ନକର୍ତ୍ତା :** ଓଁ, ତାହା ନବକାର ମନ୍ତ୍ରର ଛୋଟ ରୂପ ଅଟେ ?

**ଦାଦାଶ୍ରୀ :** ହଁ, ଅର୍ଥ ବୁଝି ଓଁ ବୋଲିବା ଦ୍ୱାରା ଧର୍ମଧ୍ୟାନ ହୁଏ ।

**ପ୍ରଶ୍ନକର୍ତ୍ତା :** ନବକାର ମନ୍ତ୍ର ବଦଳରେ ଓଁ, କେବଳ ଏତିକି କହିବୁ ତେବେ ଚଳିବ ?

**ଦାଦାଶ୍ରୀ :** ହଁ, କିନ୍ତୁ ଯଦି ଅର୍ଥ ବୁଝି କରିବା ତେବେ ! ଏ ଲୋକେ ଯେଉଁ ବୋଲନ୍ତି ତାହା ଅର୍ଥହୀନ ଅଟେ । ପ୍ରକୃତ ନବକାର ମନ୍ତ୍ର ବୋଲିବା ପରେ ତ ଘରେ କ୍ଲେଶ ହେବା ବନ୍ଦ ହୋଇଯାଏ । ଏବେ ଘରେ-ଘରେ କ୍ଲେଶ ବନ୍ଦ ହୋଇଗଲାଣି ନା ?

**ପ୍ରଶ୍ନକର୍ତ୍ତା :** ହୋଇନାହିଁ ।

**ଦାଦାଶ୍ରୀ :** ଚାଲୁ ଅଛି ? ଯଦି କ୍ଲେଶ ବନ୍ଦ ନ ହୋଇଯାଏ, ତେବେ ବୁଝିବ ଯେ ଏପର୍ଯ୍ୟନ୍ତ ଏହି ନବକାର ମନ୍ତ୍ର ଠିକ୍ ରୂପରେ ବୁଝି ବୋଲୁନାହାନ୍ତି ।

ଏହି ନବକାର ମନ୍ତ୍ର ଯେଉଁ ଅଛି, ତାହା ବୋଲିବା ଦ୍ୱାରା ଓଁ (ପଞ୍ଚ ପରମେଷ୍ଠି) ଖୁସି ହୋଇଯାନ୍ତି, ଭଗବାନ ଖୁସି ହୋଇଯାନ୍ତି । କେବଳ ଓଁ ବୋଲିବା ଦ୍ୱାରା କେବେ ଓଁ ଖୁସି ହୁଅନ୍ତି ନାହିଁ ! ଅତଃ ଏହି ନବକାର ମନ୍ତ୍ର ବି ବୋଲିବ ! ଏହି ନବକାର ମନ୍ତ୍ର ତାହା ହିଁ ଓଁ ଅଟେ ! ଏହି ସବୁର ସଂକ୍ଷିପ୍ତ ରୂପରେ ଓଁ ଶବ୍ଦ ରଖାଯାଇଛି । କରିବାବାଲା ଲୋକଙ୍କ ଲାଭ ପାଇଁ ଏପରି କରିଛନ୍ତି, କିନ୍ତୁ ଲୋକଙ୍କ ଠାରେ ଦୃଷ୍ଟି ନଥିବା କାରଣରୁ କେଜାଣି ତାହାର କେଉଁଠୁ କ'ଣ ହୋଇଗଲା ଏବଂ କଥା ବିଗିଡ଼ି ଗଲା ।

## ତାହା ପହଞ୍ଚେ ଅକ୍ରମର ମହାତ୍ମାମାନଙ୍କୁ

ଭଗବାନ ଓଁ ସ୍ୱରୂପ କାହାକୁ କହିଛନ୍ତି ? ଯାହାକୁ ମୁଁ ଏଠି ଜ୍ଞାନ ଦିଏ ନା, ସେ ସେହିଦିନଠାରୁ ହିଁ 'ମୁଁ ଶୁଦ୍ଧାତ୍ମା ଅଟେ' କହିବାକୁ ଲାଗେ, ସେବେଠାରୁ ସେ ସାଧୁ ହୋଇଯାଏ । ଶୁଦ୍ଧାତ୍ମା ଦଶା ସାଧେ ସେ ସାଧୁ । ସେଥିପାଇଁ ଆମର ଏ ମହାତ୍ମା, ଯାହାଙ୍କୁ ମୁଁ ଜ୍ଞାନ ଦେଇଛି, ତାଙ୍କୁ ଏହି ନବକାର ପହଞ୍ଚେ । ହଁ, ଲୋକେ ନବକାର ମନ୍ତ୍ର ବୋଲନ୍ତି ନା, ତାହାର ଦାୟିତ୍ୱଭାର ତୁମ ମୁଣ୍ଡ ଉପରକୁ ଆସେ । କାରଣ ତୁମେ ମଧ୍ୟ ନବକାରରେ ଆସିଗଲ । ଆତ୍ମଦଶା ସାଧେ ସେ ସାଧୁ ।

ତାହାପରେ ତୁମେ ଧୀରେ-ଧୀରେ ଅଳ୍ପ-ଅଳ୍ପ ନିଜେ ବୁଝିବାକୁ ଲାଗିଲ ଏବଂ ଅଳ୍ପ-ଅଳ୍ପ ଅନ୍ୟଙ୍କୁ ବୁଝାଇ ପାରିଲ, ଏପରି ହେଲା ଅର୍ଥାତ ତୁମେ ସାଧୁରୁ ଆଗକୁ

ପହଞ୍ଚିଲ । ସେବେଠାରୁ ଉପାଧ୍ୟାୟ ହେବାକୁ ଲାଗିଲ । ଆଉ ଆଚାର୍ଯ୍ୟପଦ ଏହି କାଳରେ ଶୀଘ୍ର ମିଳେ ଏପରି ନୁହେଁ, ମୋର ଯିବା ପରେ ଯଦି ହେବେ ସେ କଥା ଅଲଗା ।

## ନବକାରର ମାହାତ୍ମ୍ୟ

'ଏସୋ ପଞ୍ଚ ନମୁକ୍କାରୋ' ଅର୍ଥାତ ଏହା ଯେଉଁ ଉପରେ କୁହାଯାଇଛି, ସେ ପାଞ୍ଚ ପଦକୁ ନମସ୍କାର କରୁଛି ।

'ସବ୍ୱ ପାବପ୍ପଣାସଣୋ' ଅର୍ଥାତ ଏହା ସମସ୍ତ ପାପର ନାଶ କରିବାବାଲା ଅଟେ । ଏହା ବୋଲିବା ଦ୍ୱାରା ସମସ୍ତ ପାପ ଭସ୍ମୀଭୂତ ହୋଇଯାଏ ।

'ମଙ୍ଗଲାଣ ଚ ସବ୍ୱେସିଂ' ଅର୍ଥାତ ସମସ୍ତ ମଙ୍ଗଳ ମଧ୍ୟରେ...

'ପଢ଼ମଂ ହବଇ ମଙ୍ଗଲମ୍' ଅର୍ଥାତ ଏହା ପ୍ରଥମ ମଙ୍ଗଳ ଅଟେ । ଏହି ଦୁନିଆରେ ଯେଉଁ ସବୁ ମଙ୍ଗଳ ଅଛି, ସେ ସବୁ ମଧ୍ୟରେ ସର୍ବପ୍ରଥମ ମଙ୍ଗଳ ଏହା ଅଟେ, ସବୁଠୁ ବଡ଼ ମଙ୍ଗଳ ଅଟେ ଏହା, ଏପରି କହିବାକୁ ଚାହୁଁଛନ୍ତି ।

କୁହ ଏବେ, ଆମକୁ ଏହା ଛାଡ଼ିଦେବା ଉଚିତ କି ? ପକ୍ଷପାତକୁ ନେଇ ଛାଡ଼ିଦେବା ଉଚିତ ? ଭଗବାନ ନିଷ୍ପକ୍ଷପାତୀ ହୋଇଥିବେ ନା ପକ୍ଷପାତୀ ହୋଇଥିବେ ?

**ପ୍ରଶ୍ନକର୍ତ୍ତା :** ନିଷ୍ପକ୍ଷପାତୀ ।

**ଦାଦାଶ୍ରୀ :** ତେବେ ପୁଣି ଯେପରି ଭଗବାନ କହିଛନ୍ତି, ସେହିପରି ତାଙ୍କ ନିଷ୍ପକ୍ଷପାତୀ ମନ୍ତ୍ରକୁ ଭଜିବା ।

## ତ୍ରିମନ୍ତ୍ର ଦ୍ୱାରା, ହାଲୁକା ହୁଏ *ଭୋଗବଟା*

**ପ୍ରଶ୍ନକର୍ତ୍ତା :** ତ୍ରିମନ୍ତ୍ରରେ ସବ୍ୱ ପାବପ୍ପଣାସଣୋ ଆସେ । ଏହା ସମସ୍ତ ପାପର ନାଶ କରେ, ତେବେ ପୁଣି କ'ଣ ବିନା *ଭୋଗବଟା* ରେ ସେସବୁ ନଷ୍ଟ ହୋଇଯାଏ ?

**ଦାଦାଶ୍ରୀ :** ସେ *ଭୋଗବଟା* ତ ଆସିବ । ଏପରି ଅଟେ ଯେ, ତୁମେ ଏଠାରେ ମୋ ସହ ଯଦି ଚାରିଦିନ ରହିବ, ତେବେ ତୁମକୁ କର୍ମର *ଭୋଗବଟା* ତ ରହିବ କିନ୍ତୁ ସେ *ଭୋଗବଟା* ମୋ ଉପସ୍ଥିତିରେ ହାଲୁକା ହୋଇଯାଏ । ସେହିପରି ତ୍ରିମନ୍ତ୍ରର ଉପସ୍ଥିତିରେ *ଭୋଗବଟା* ରେ ବହୁତ ଫରକ ପଡ଼ିଯାଏ । ପୁଣି ତାହାର ତୁମ ଉପରେ ବେଶୀ ପ୍ରଭାବ ପଡ଼େ ନାହିଁ ।

ଏବେ ଜଣେ ବ୍ୟକ୍ତି ଯାହାକୁ ଜ୍ଞାନ ନାହିଁ, ତାକୁ ଚାରିଦିନ ପାଇଁ ଯଦି ଜେଲରେ ଭର୍ତ୍ତି କରାଯାଏ ତେବେ ତା'କୁ କେତେ ବ୍ୟାକୁଳତା ହେବ ? ଆଉ ଜ୍ଞାନବାଲାକୁ

ଜେଲରେ ଭର୍ତ୍ତି କରାଯାଏ, ତେବେ ? ତା'ର କ'ଣ ଯେ *ଭୋଗବଟା* ତ ସେତିକିକୁ ସେତିକି କିନ୍ତୁ ତାହା ଭିତରେ ପ୍ରଭାବ ପକାଏ ନାହିଁ ।

## ବ୍ୟବସ୍ଥିତରେ ଥିବ, ତେବେ ଜପି ହେବ

**ପ୍ରଶ୍ନକର୍ତ୍ତା :** ଆପଣ କହୁଛନ୍ତି ଯେ ତ୍ରିମନ୍ତ୍ର ଆମର ସମସ୍ତ ବାଧାବିଘ୍ନ ଦୂର କରିଦିଏ । ଆପଣ ଏହା ମଧ୍ୟ କହୁଛନ୍ତି ଯେ ସବୁ 'ବ୍ୟବସ୍ଥିତ' ହିଁ ଅଟେ, ତେବେ ପୁଣି ତ୍ରିମନ୍ତ୍ରରେ ଶକ୍ତି କେଉଁଠୁ ଆସିଲା ?

**ଦାଦାଶ୍ରୀ :** ବ୍ୟବସ୍ଥିତ ଅର୍ଥାତ କ'ଣ ଯେ ଯଦି ବିଘ୍ନ ଦୂର ହେବାକୁ ନଥିବ ତେବେ ସେପର୍ଯ୍ୟନ୍ତ ଆମଦ୍ୱାରା ତ୍ରିମନ୍ତ୍ର ବୋଲି ହେବ ନାହିଁ, ଏହିପରି 'ବ୍ୟବସ୍ଥିତ' ବୁଝିନେବ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତ୍ରିମନ୍ତ୍ର ବୋଲିବା ପରେ ମଧ୍ୟ ଯଦି ବିଘ୍ନ ଦୂର ନ ହୁଏ ତେବେ କ'ଣ ବୁଝିବା ଉଚିତ ?

**ଦାଦାଶ୍ରୀ :** ସେ ବିଘ୍ନ କେତେ ବଡ଼ ଥିଲା ଏବଂ କେତେ କମ୍ ହୋଇଗଲା, ତାହା ତୁମକୁ ଜଣା ପଡ଼େ ନାହିଁ କିନ୍ତୁ ତାହା ମୋତେ ଜଣା ପଡ଼େ ।

## ନବକାର ଅର୍ଥାତ ନମସ୍କାର

**ପ୍ରଶ୍ନକର୍ତ୍ତା :** କିଛି ଲୋକ 'ନମୋ ଲୋଏ ସବ୍ୱସାହୁଣଂ' ପର୍ଯ୍ୟନ୍ତ ହିଁ ବୋଲନ୍ତି ଏବଂ କିଛି ଲୋକ 'ଏସୋ ପଞ୍ଚ ନମୁକ୍କାରୋ' ଏବଂ ଶେଷ ପର୍ଯ୍ୟନ୍ତ ବୋଲନ୍ତି । ଦୁଇଟିରୁ କେଉଁଟା ଠିକ ?

**ଦାଦାଶ୍ରୀ :** 'ଏସୋ ପଞ୍ଚ ନମୁକ୍କାରୋ'ରୁ ପଛର ଚାରିବାକ୍ୟ ଯଦି ନ ବୋଲିବେ ତେବେ ଅସୁବିଧା ନାହିଁ । ମନ୍ତ୍ର ତ ପାଞ୍ଚ ହିଁ ଅଟେ ଏବଂ ପଛର ଚାରି ବାକ୍ୟ ତ ତାହାର ମାହାତ୍ମ୍ୟ ବୁଝାଇବା ପାଇଁ ଲେଖାଯାଇଛି ।

**ପ୍ରଶ୍ନକର୍ତ୍ତା :** ଏହା ନବ(ନଅ) ପଦ ହିସାବରେ ନବକାର ମନ୍ତ୍ର କୁହାଯାଏ ?

**ଦାଦାଶ୍ରୀ :** ନା, ନା, ଏପରି ନୁହେଁ । ଏହା ନବ ପଦ ନୁହେଁ । ଏହା ନମସ୍କାର ମନ୍ତ୍ର ଅଟେ, ତାହା ବଦଳରେ ନବକାର ହୋଇଗଲା । ଏହା ମୂଳ ଶବ୍ଦ ନମସ୍କାର ମନ୍ତ୍ର ଅଟେ, ତାହା ବଦଳରେ ମାଗଧୀ ଭାଷାରେ ନବକାର ବୋଲନ୍ତି । ସେଥିପାଇଁ ନମସ୍କାରକୁ ହିଁ ଏହି ନବକାର କହନ୍ତି । ଅର୍ଥାତ ନବ ପଦ ସହ ଏହାର ନେବା-ଦେବା ନାହିଁ । ଏହି ପାଞ୍ଚୋଟି ହିଁ ନମସ୍କାର ଅଛି ।

## ଓଁ ନମୋ ଭଗବତେ ବାସୁଦେବାୟ...

**ପ୍ରଶ୍ନକର୍ତ୍ତା :** ପୁଣି 'ଓଁ ନମୋ ଭଗବତେ ବାସୁଦେବାୟ' ବୁଝାନ୍ତୁ ।

**ଦାଦାଶ୍ରୀ :** ବାସୁଦେବ ଭଗବାନ! ଅର୍ଥାତ ଯେଉଁ ବାସୁଦେବ ଭଗବାନ ନରରୁ ନାରାୟଣ ହୋଇଛନ୍ତି, ତାଙ୍କୁ ମୁଁ ନମସ୍କାର କରୁଛି । ଯେବେ ନାରାୟଣ ହୋଇଯାନ୍ତି, ସେତେବେଳେ ବାସୁଦେବ କୁହାଯାନ୍ତି ।

**ପ୍ରଶ୍ନକର୍ତ୍ତା :** ଶ୍ରୀକୃଷ୍ଣ, ମହାବୀର ସ୍ୱାମୀ ସେମାନେ ସମସ୍ତେ କ'ଣ ?

**ଦାଦାଶ୍ରୀ :** ସେମାନେ ସମସ୍ତେ ତ ଭଗବାନ ଅଟନ୍ତି । ସେମାନେ ଦେହଧାରୀ ରୂପରେ ଭଗବାନ କୁହାଯାନ୍ତି । ସେମାନେ ଭଗବାନ କାହିଁକି କୁହାଯାନ୍ତି, କାରଣ ଭିତରେ ସମ୍ପୂର୍ଣ୍ଣ ଭଗବାନ ପ୍ରକଟ ହୋଇଛନ୍ତି । ସେଥିପାଇଁ ମୁଁ ତାଙ୍କୁ ଦେହ ସହିତ ଭଗବାନ କହେ ।

କୃଷ୍ଣ ଭଗବାନ ତ ବାସୁଦେବ ଭଗବାନ ଅଟନ୍ତି, ସେଥିରେ କିଛି ଶକ୍ ନାହିଁ ନା ? ବାସୁଦେବ ଅର୍ଥାତ ନାରାୟଣ । ନରରୁ ଯିଏ ନାରାୟଣ ହେଲେ ଏପରି ଭଗବାନ ପ୍ରକଟ ହୋଇଥିଲେ । ତାଙ୍କୁ ଆମେ ଭଗବାନ କହୁଛେ ।

ଆଉ ଯେଉଁ ମହାବୀର ଭଗବାନ ହେଲେ, ଋଷଭଦେବ ଭଗବାନ ହେଲେ ସେମାନେ ପୂର୍ଣ୍ଣ ଭଗବାନ କୁହାଯାନ୍ତି । କୃଷ୍ଣ ଭଗବାନ ବାସୁଦେବ ଭଗବାନ କୁହାଯାନ୍ତି । ତାଙ୍କର ଏବେ ଏକ ଅବତାର ଅଛି । କିନ୍ତୁ ସେ ଭଗବାନ ହିଁ ଅଟନ୍ତି ।

ବାସୁଦେବଙ୍କ ଗଣତି ଭଗବାନରେ ହୁଏ । ଶିବଙ୍କ ଗଣତି ଭଗବାନରେ ହୁଏ ଏବଂ ସଚ୍ଚିଦାନନ୍ଦ, ସେମାନେ ମଧ୍ୟ ଭଗବାନରେ ଗଣାଯାନ୍ତି । ଏବଂ ଏହି ପଞ୍ଚ ପରମେଷ୍ଠି ମଧ୍ୟ ଭଗବାନରେ ହିଁ ଗଣାଯାନ୍ତି । କାହିଁକିନା ଏମାନେ ପ୍ରକୃତ ସାଧକ ଅଟନ୍ତି ଏମାନେ ସବୁ ଭଗବାନରେ ଗଣାଯାନ୍ତି । କିନ୍ତୁ ଏ ପଞ୍ଚ ପରମେଷ୍ଠି କାର୍ଯ୍ୟ-ଭଗବାନ କୁହାଯାନ୍ତି, ଯେବେକି ବାସୁଦେବ ତଥା ଶିବ କାରଣ-ଭଗବାନ କୁହାଯାନ୍ତି । ସେମାନେ କାର୍ଯ୍ୟ-ଭଗବାନ ହେବାର କାରଣର ସେବନ କରନ୍ତି ।

## ନରରୁ ନାରାୟଣ

**ପ୍ରଶ୍ନକର୍ତ୍ତା :** 'ଓଁ ନମୋ ଭଗବତେ ବାସୁଦେବାୟ'ର ଟିକିଏ ବିଶେଷ ରୂପରେ ସ୍ପଷ୍ଟୀକରଣ କରନ୍ତୁ ।

**ଦାଦାଶ୍ରୀ :** ଏ ଶ୍ରୀକୃଷ୍ଣ ଭଗବାନ ବାସୁଦେବ ଅଟନ୍ତି, ଋଷଭଦେବ ଭଗବାନଙ୍କ ସମୟରୁ ନେଇ ଆଜି ପର୍ଯ୍ୟନ୍ତ ସେହିପରି ନଅ ବାସୁଦେବ ହୋଇସାରିଛନ୍ତି । ବାସୁଦେବ

ଅର୍ଥାତ, ନରରୁ ନାରାୟଣ ହୁଅନ୍ତି, ସେହି ପଦକୁ ବାସୁଦେବ କୁହାଯାଏ । ତପ-ତ୍ୟାଗ କିଛି ମଧ୍ୟ ନାହିଁ । ତାଙ୍କର ତ ମାରପିଟ-ଝଗଡ଼ା-ତୋଫାନ ସବୁକିଛି ତାଙ୍କ ପ୍ରତିପକ୍ଷୀଙ୍କ ସହ ହୁଏ । ସେଥିପାଇଁ ତ ତାଙ୍କ ପ୍ରତିପକ୍ଷୀ ରୂପେ ପ୍ରତିବାସୁଦେବ ଜନ୍ମ ନିଅନ୍ତି । ସେ ପ୍ରତିନାରାୟଣ କୁହାଯାନ୍ତି ! ସେ ଦୁହିଁଙ୍କର ଝଗଡ଼ା ଚାଲିଥାଏ । ଏବଂ ସେତେବେଳେ ନଅ ବଳଦେବ ବି ଥାଆନ୍ତି । କୃଷ୍ଣ ବାସୁଦେବ ଥିଲେ ଏବଂ ବଳରାମ (ଶ୍ରୀକୃଷ୍ଣଙ୍କ ବଡ଼ଭାଇ), ସେ ବଳଦେବ ଥିଲେ । ଭଗବାନ ରାମଚନ୍ଦ୍ରଜୀ ବାସୁଦେବ ନୁହଁନ୍ତି, ରାମଚନ୍ଦ୍ରଜୀ ବଳଦେବ ଅଟନ୍ତି । ଲକ୍ଷ୍ମଣ ବାସୁଦେବ ଥିଲେ ଏବଂ ରାବଣ ପ୍ରତିବାସୁଦେବ ଥିଲେ । ରାବଣ ପୂଜ୍ୟ ଅଟନ୍ତି । ରାବଣ ଖାସ୍ ପୂଜା କରିବା ଯୋଗ୍ୟ ଅଟନ୍ତି । ଲୋକେ ତାଙ୍କ ପୁତଳା ଜଳାନ୍ତି । ଭୟଙ୍କର ରୂପରେ ଜଳାନ୍ତି ନା ! ଦେଖ ନା ! ଏପରି ଓଲଟା ଜ୍ଞାନ ଯେଉଁଠି ବ୍ୟାପିଛି, ସେ ଦେଶର ମଙ୍ଗଳ ପୁଣି କିପରି ହେବ ? ରାବଣଙ୍କ ପୁତଳା ଜଳାଇବା ଉଚିତ ନୁହେଁ ।

ଏହି କାଳର ବାସୁଦେବ ଅର୍ଥାତ କିଏ ? କୃଷ୍ଣ ଭଗବାନ । ସେଥିପାଇଁ ଏହି ନମସ୍କାର କୃଷ୍ଣ ଭଗବାନଙ୍କୁ ପହଞ୍ଚେ । ତାଙ୍କର ଯିଏ ଶାସନଦେବ ଥିବେ, ତାଙ୍କୁ ପହଞ୍ଚେ ।

## ବାସୁଦେବ ପଦ, ଅଲୌକିକ

ବାସୁଦେବ ତ କିଭଳି ହୋଇଥାନ୍ତି ? ଗୋଟିଏ ଆଖିରେ ଲକ୍ଷେ ମଣିଷ ଡରିଯାନ୍ତି ଏପରି ତ ବାସୁଦେବଙ୍କ ଆଖି ହୋଇଥାଏ । କେବଳ ତାଙ୍କ ଆଖି ଦେଖି ହିଁ ଡରିଯାନ୍ତି । ବାସୁଦେବ ପଦର ବୀଜ କେବେ ପଡ଼େ ? ବାସୁଦେବ ହେବାକୁ ଥିବ ତେବେ ଅନେକ ଅବତାର ପୂର୍ବରୁ ଏପରି ପ୍ରଭାବ ହୁଏ । ବାସୁଦେବ ଯେବେ ଚାଲନ୍ତି ସେତେବେଳେ ପୃଥିବୀ ଧମ୍ ଧମ୍ ହୁଏ (କମ୍ପି ଉଠେ) ! ହଁ, ମାଟି ତଳୁ ଶବ୍ଦ ଶୁଭେ । ଅର୍ଥାତ ସେ ବୀଜ ହିଁ ଅଲଗା ପ୍ରକାରର । କେବଳ ତାଙ୍କ ଉପସ୍ଥିତିରେ ହିଁ ଲୋକେ ଏପଟ-ସେପଟ ହୋଇଯାନ୍ତି, ତାଙ୍କ କଥା ହିଁ ଅଲଗା ! ବାସୁଦେବ ତ ମୂଳତଃ ଜନ୍ମରୁ ହିଁ ଜଣା ପଡ଼ିଯାନ୍ତି, ଯେ ବାସୁଦେବ ହେବେ । ଅନେକ ଅବତାର ପରେ ବାସୁଦେବ ହେବାକୁ ଥିବ, ତାହାର ସଙ୍କେତ ଆଜିଠୁ ହିଁ ମିଳିବାକୁ ଲାଗେ । ତୀର୍ଥଙ୍କର ଜଣା ପଡ଼ନ୍ତି ନାହିଁ କିନ୍ତୁ ବାସୁଦେବ ଜଣା ପଡ଼ନ୍ତି । ତାଙ୍କ ଲକ୍ଷଣ ହିଁ ଅଲଗା ପ୍ରକାର ହୋଇଥାଏ । ପ୍ରତିବାସୁଦେବ ମଧ୍ୟ ଏହିପରି ହୋଇଥାନ୍ତି ।

**ପ୍ରଶ୍ନକର୍ତ୍ତା :** ତେବେ ତୀର୍ଥଙ୍କର ପୂର୍ବ ଅବତାରରେ କିପରି ଜାଣି ହୁଅନ୍ତି ?

**ଦାଦାଶ୍ରୀ :** ତୀର୍ଥଙ୍କର ସାଦା-ସିଧା ହୋଇଥାନ୍ତି । ତାଙ୍କ ଲାଇନ ହିଁ ସିଧା

ହୋଇଥାଏ । ତାଙ୍କର ଦୋଷ ହୁଏ ହିଁ ନାହିଁ, ତାଙ୍କ ଲାଇନରେ ଦୋଷ ଆସେ ହିଁ ନାହିଁ ଆଉ ଯଦି ଦୋଷ ଆସିଯାଏ ତେବେ କୌଣସି ବି ପ୍ରକାରେ (ଜ୍ଞାନଦ୍ୱାରା) ପୁଣି, ମୂଳ ସ୍ଥାନକୁ ଫେରି ଆସନ୍ତି । ସେ ଲାଇନ ହିଁ ଅଲଗା ଅଟେ । ଯେବେକି ବାସୁଦେବ ତଥା ପ୍ରତିବାସୁଦେବଙ୍କ ଠାରେ ତ ଅନେକ ଅବତାର ପୂର୍ବରୁ ଏପରି ଗୁଣ ଥାଏ । ବାସୁଦେବ ହେବା ଅର୍ଥାତ ନରରୁ ନାରାୟଣ ହେଲେ କୁହାଯିବେ । ନରରୁ ନାରାୟଣ ଅର୍ଥାତ କେଉଁ ଅର୍ଥରେ, ଯେପରି ଯେବେ (ଚନ୍ଦ୍ରର)ଆକାର ବଢ଼ିଯାଏ ସେବେଠାରୁ ଜଣା ପଡ଼ିଯାଏ ଯେ ପୂର୍ଣ୍ଣିମା ହେବାକୁ ଅଛି । ସେହିପରି ଅନେକ ଅବତାର ପୂର୍ବରୁ ଜଣା ପଡ଼ିଯାଏ ଯେ ସେ ବାସୁଦେବ ହେବେ ।

## କହିବ ନାହିଁ ଓଲଟା, କୃଷ୍ଣ ଅବା ରାବଣଙ୍କର

ଏମାନେ ଯେଉଁ ତେଷଠି ଶଲାକା ପୁରୁଷ କୁହାଯାନ୍ତି, ସେମାନଙ୍କ ଉପରେ ଭଗବାନ ମୋହର ଲଗାଇଛନ୍ତି ଯେ ଏ ସମସ୍ତେ ଭଗବାନ ହେବା ଯୋଗ୍ୟ ଅଟନ୍ତି । ଏଣୁ ଆମେ ଏକୁଟିଆ ଅରିହନ୍ତଙ୍କୁ ଭଜିବା ଏବଂ ଏହି ବାସୁଦେବଙ୍କୁ ଭଜିବା ନାହିଁ ତେବେ ବାସୁଦେବ ଭବିଷ୍ୟତରେ ଅରିହନ୍ତ ହେବେ । ଯଦି ବାସୁଦେବଙ୍କ ଓଲଟା କହିବା ତେବେ ପୁଣି ଆମର କ'ଣ ହେବ ? ଲୋକେ କୁହନ୍ତି ନା, 'କୃଷ୍ଣ ଭଗବାନଙ୍କର ଏମିତି ହୋଇଛି, ସେମିତି ହୋଇଛି...' ଆରେ, ଏପରି କହିବା ଉଚିତ ନୁହେଁ । ତାଙ୍କ ବିଷୟରେ କିଛି ବି କହିବ ନାହିଁ । ତାଙ୍କ କଥା ଅଲଗା ଏବଂ ତୁ ଯାହା ଶୁଣିଛୁ ସେ କଥା ଅଲଗା । କାହିଁକି ବିପଦ ଆପଣେଇ ନେଉଛୁ ? ଯେଉଁ କୃଷ୍ଣ ଭଗବାନ ଆଗତ ଚବିଶିରେ ତୀର୍ଥଙ୍କର ହେବାକୁ ଅଛନ୍ତି, ଯେଉଁ ରାବଣ ଆଗତ ଚବିଶିରେ ତୀର୍ଥଙ୍କର ହେବାକୁ ଅଛନ୍ତି, ତାଙ୍କ କଥା କହି ବିପଦ କାହିଁକି ଆପଣେଇ ନେଉଛ ?

## ତେଷଠି ଶଲାକା ପୁରୁଷ

ଶଲାକା ପୁରୁଷ ଅର୍ଥାତ ମୋକ୍ଷରେ ଯିବା ଯୋଗ୍ୟ ଶ୍ରେଷ୍ଠ ପୁରୁଷ । ମୋକ୍ଷରେ ତ ଅନ୍ୟମାନେ ମଧ୍ୟ ଯିବେ କିନ୍ତୁ ଏମାନେ ଶ୍ରେଷ୍ଠ ପୁରୁଷ ଅଟନ୍ତି । ସେଥିପାଇଁ ସେମାନେ ଖ୍ୟାତି ସହିତ ଅଛନ୍ତି । ସମ୍ପୂର୍ଣ୍ଣ ଖ୍ୟାତନାମ ହୋଇ ମୋକ୍ଷରେ ଯାଆନ୍ତି । ହଁ, ସେଥିରେ ଚବିଶ ତୀର୍ଥଙ୍କର ଥାଆନ୍ତି, ବାର ଚକ୍ରବର୍ତ୍ତୀ ଥାଆନ୍ତି, ନଅ ବାସୁଦେବ ଥାଆନ୍ତି, ନଅ ପ୍ରତିବାସୁଦେବ ଥାଆନ୍ତି ଏବଂ ନଅ ବଳଦେବ ଥାଆନ୍ତି । ବଳଦେବ ବାସୁଦେବଙ୍କ ବଡ଼ଭାଇ ! ସେମାନେ ସର୍ବଦା ସାଥିରେ ହିଁ ହୁଅନ୍ତି । ଏହା ନେଚୁରାଲ୍ ଏଡ୍‌ଜଷ୍ଟମେଣ୍ଟ

ଅଟେ । ସେଥିରେ ଫରକ ହୁଏ ନାହିଁ । ନେଚୁରାଲ୍‌ରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ଯେପରି ପାଣି ପାଇଁ 2H ଏବଂ O ହିଁ ଦରକାର, ସେହିପରି ଅଟେ ଏହି କଥା ।

ଏହା ସାଇଣ୍ଟିଫିକ୍ ଅଟେ । ନହେଲେ ଏ ତେଷଠି ମୋ ଶବ୍ଦ ନୁହେଁ, ତେଷଠି ବଦଳରେ ଚଉଷଠି ବି ରଖିଥାନ୍ତି କିନ୍ତୁ ଏହା ପ୍ରକୃତିର ରଚନା କେତେ ସୁନ୍ଦର ଏବଂ ବ୍ୟବସ୍ଥିତ ଅଟେ !

## ବୋଲିବା ସମୟରେ ଉପଯୋଗ...

ଆମେ ଓଁ ନମୋ ଭଗବତେ ବାସୁଦେବାୟ ବୋଲିବା, ତେବେ କୃଷ୍ଣ ଭଗବାନ ବି ଦେଖାଯିବେ ଏବଂ ଶବ୍ଦ ବି ଆମେ ବୋଲିବା । ଏବେ କୃଷ୍ଣ ଭଗବାନ, ପଛେ ଯିଏ ଆମ ଦର୍ଶନରେ ଆସିଥାନ୍ତୁ, ଯାହା ବି ଚିତ୍ର ଆମ ହୃଦୟରେ ଥାଉ, ପୁଣି ସେ ମୁରଲୀବାଲା ହୁଅନ୍ତୁ ଅବା ଅନ୍ୟ ରୂପରେ ହୁଅନ୍ତୁ କିନ୍ତୁ ଆମର ଏହି ଉଚ୍ଚାରଣ ସହିତ ହିଁ ସେ ତୁରନ୍ତ ଦେଖାଯିବା ଦରକାର, ବୋଲିବା ମାତ୍ରେ ଦେଖାଯିବେ । ବୋଲିବା ଏବଂ ନ ଦେଖାଯିବେ, ତାହାର ଅର୍ଥ ହିଁ କ'ଣ ?

କେବଳ ନାମ ବୋଲିବା ତେବେ ନାମର ଫଳ ମିଳିବ । କିନ୍ତୁ ସାଥେ-ସାଥେ ତାଙ୍କ ମୂର୍ତ୍ତି ଦେଖିବା ତେବେ ଉଭୟ ଫଳ ମିଳିବ । ନାମ ଏବଂ ସ୍ଥାପନା, ଯଦି ଏହି ଦୁଇ ଫଳ ମିଳେ ତେବେ ବହୁତ ହୋଇଗଲା ।

**ପ୍ରଶ୍ନକର୍ତ୍ତା :** 'ନମୋ ଅରିହନ୍ତାଣଂ'ର ଜପ କରିବା ସମୟରେ ମନରେ କେଉଁ ରଙ୍ଗର ଚିନ୍ତନ କରିବା ଉଚିତ ?

**ଦାଦାଶ୍ରୀ :** 'ନମୋ ଅରିହନ୍ତାଣଂ'ର ଜପ କରିବା ସମୟରେ କୌଣସି ରଙ୍ଗର ଚିନ୍ତନ କରିବାର ଆବଶ୍ୟକତା ନାହିଁ । ଆଉ ଯଦି ଚିନ୍ତନ କରିବାର ଥିବ ତେବେ ଆଖି ବୁଜି ନ...ମୋ... ଅ...ରି...ହ...ନ୍ତା...ଣଂ... ଏପରି ଗୋଟିଏ-ଗୋଟିଏ ଅକ୍ଷର ନଜର ଆସିବା ଉଚିତ । ତାହାଦ୍ୱାରା ବହୁତ ଉତ୍ତମ ଫଳ ପ୍ରାପ୍ତ ହୁଏ । ଯେତେବେଳେ ଆଖି ବୁଜି ବୋଲିବ ସେତେବେଳେ, ନ...ମୋ... ଅ...ରି...ହ...ନ୍ତା...ଣଂ ଏ ଅକ୍ଷର ବୋଲିବା ସମୟରେ କ'ଣ ମନରେ ପଢ଼ାଯାଇ ପାରିବ ନାହିଁ ? ଅଭ୍ୟାସ କର, ତେବେ ପୁଣି ତୁମେ ପଢ଼ିପାରିବ ।

ପୁଣି 'ଓଁ ନମୋ ଭଗବତେ ବାସୁଦେବାୟ' ଏହାକୁ ମଧ୍ୟ ତୁମେ ଆଖି ବୁଜି ବୋଲିବ ତେବେ ପ୍ରତ୍ୟେକ ଅକ୍ଷର ଦେଖାଯିବ । ଅକ୍ଷର ସହିତ ପଢ଼ିପାରିବ । ତୁମେ ଦୁଇ ଦିନ ଅଭ୍ୟାସ କର, ତୃତୀୟ ଦିନ ବହୁତ ସୁନ୍ଦର ଦେଖାଯିବ ।

ମନ୍ତ୍ରର ଏହିପରି ଚିନ୍ତନ କରିବାର ଅଛି । ଏହାକୁ ଧ୍ୟାନ କୁହନ୍ତି । ଯଦି ଏହି ତ୍ରିମନ୍ତ୍ରର ଏପରି ଧ୍ୟାନ କରିବା, ତେବେ ବହୁତ ସୁନ୍ଦର ଧ୍ୟାନ ହୋଇଯିବ ।

## ଓଁ ନମଃ ଶିବାୟ...

**ପ୍ରଶ୍ନକର୍ତ୍ତା :** 'ଓଁ ନମଃ ଶିବାୟ' ବିସ୍ତାରରେ ବୁଝାନ୍ତୁ ।

**ଦାଦାଶ୍ରୀ :** ଏହି ଦୁନିଆରେ ଯିଏ କଲ୍ୟାଣ ସ୍ୱରୂପ ହୋଇସାରିଥିବେ ଏବଂ ଜୀବିତ ଥିବେ, ଯାହାଙ୍କ ଅହଂକାର ଚାଲିଯାଇଥିବ, ସେମାନେ ସମସ୍ତେ ଶିବ କୁହାଯାନ୍ତି । ଶିବ ନାମରେ କୌଣସି ବ୍ୟକ୍ତି ନାହାନ୍ତି । ଶିବ ତ ନିଜେ କଲ୍ୟାଣ ସ୍ୱରୂପ ହିଁ ଅଟନ୍ତି । ଏଣୁ ଯିଏ ନିଜେ କଲ୍ୟାଣ ସ୍ୱରୂପ ହୋଇଛନ୍ତି ଏବଂ ଅନ୍ୟଙ୍କୁ କଲ୍ୟାଣର ରାସ୍ତା ଦେଖାନ୍ତି, ତାଙ୍କୁ ନମସ୍କାର କରୁଛି ।

ଯିଏ କଲ୍ୟାଣ ସ୍ୱରୂପ ହୋଇ ବସିଛନ୍ତି, ସେ ପଛେ ହିନ୍ଦୁସ୍ତାନରେ ଥାଆନ୍ତୁ ଅବା କେଉଁଠି ବି ଥାଆନ୍ତୁ, ତାଙ୍କୁ ନମସ୍କାର କରୁଛି । କଲ୍ୟାଣ ସ୍ୱରୂପ କାହାକୁ କୁହାଯାଏ ? ଯାହା ପାଇଁ ମୋକ୍ଷଲକ୍ଷ୍ମୀ ମାଳ ପିନ୍ଧାଇବା ପାଇଁ ପ୍ରସ୍ତୁତ ଥାଏ । ମୋକ୍ଷଲକ୍ଷ୍ମୀ ବିବାହ ପାଇଁ ପ୍ରସ୍ତୁତ ଥାଏ, ସେ କଲ୍ୟାଣ ସ୍ୱରୂପ କୁହାଯାନ୍ତି ।

## ଶଙ୍କର ନୀଳକଣ୍ଠ କାହିଁକି ?

ଆମେ ସେଠି ମହାଦେବଙ୍କ ମନ୍ଦିରରେ ଯାଇ ବୋଲୁଛେ ନା,

'ତ୍ରିଶୁଳ ଥାଇ ମଧ୍ୟ ଜଗତ ଜହର ପିଇବାବାଲା,

ଶଙ୍କର ବି ମୁଁ ଏବଂ ନୀଳକଣ୍ଠ ବି ମୁଁ ।'

ମୁଁ ହିଁ ଶଙ୍କର ଏବଂ ମୁଁ ହିଁ ନୀଳକଣ୍ଠ, କାହିଁକି କହିଲେ ? ଏହି ସଂସାରରେ ଯିଏ-ଯିଏ ଜହର ପିଆଇଲେ ତାହା ପୂରାକୁ ପୂରା ପିଇଗଲେ । ଆଉ ତୁମେ ଯଦି ପିଇଯିବ ତେବେ ତୁମେ ମଧ୍ୟ ଶଙ୍କର ହୋଇଯିବ । କେହି ଗାଳିଦିଏ, କେହି ଅପମାନ କରେ ତେବେ ମଧ୍ୟ ଆର୍ଶୀବାଦ ଦେଇ, ସମଭାବରେ ପୂରାକୁ ପୂରା ଜହର ପିଇଯିବ ତେବେ ତୁମେ ଶଙ୍କର ହୋଇଯିବ । ସେମିତିରେ ସମଭାବ ରହିପାରିବ ନାହିଁ, କିନ୍ତୁ ଯେବେ ଆର୍ଶୀବାଦ ଦିଅନ୍ତି, ସେତେବେଳେ ସମଭାବ ଆସିଯାଏ । ଯଦି କେବଳ ସମଭାବ ରଖିବାକୁ ଯିବ ତେବେ ବିଷମଭାବ ହୋଇଯିବ ।

ମହାଦେବ ଜହର (ସାଂସାରିକ କଷ୍ଟ) ର ସମସ୍ତ ପିଆଲା(ପାତ୍ର) ପିଇ ଯାଇଥିଲେ । ଯିଏ ପିଆଲା ଦେଲା, ତା ପିଆଲା ନେଇ ପିଇଗଲେ । ମୁଁ ବି ସେହିପରି ପିଆଲା ପିଇ ମହାଦେବ ହୋଇଛି । ତୁମକୁ ବି ଯଦି ମହାଦେବ ହେବାର ଥିବ ତେବେ

ଏହିପରି କରିବ । ଏବେ ବି ସମୟ ଅଛି । ପାଞ୍ଚ-ଦଶ ବର୍ଷ ଯଦି ପିଇ ପାରିବ ତେବେ ବହୁତ ହୋଇଗଲା । ତେବେ ତୁମେ ମଧ୍ୟ ମହାଦେବ ହୋଇଯିବ । କିନ୍ତୁ ତୁମେ ତ, ସେ ପିଆଲା ପିଆଏ ତା ପୂର୍ବରୁ ତା'କୁ ହିଁ ପିଆଇ ଦେଉଛ ! 'ନେ, ମୋତେ ମହାଦେବ ହେବାର ନାହିଁ, ତୁ ମହାଦେବ ହୋ', ଏପରି କୁହନ୍ତି !

## ଶିବୋହମ୍ କେବେ କହି ପାରିବା ?

**ପ୍ରଶ୍ନକର୍ତ୍ତା :** କିଛି ଲୋକ 'ଶିବୋହମ୍, ଶିବୋହମ୍' ଏପରି କୁହନ୍ତି, ତାହା କ'ଣ ?

**ଦାଦାଶ୍ରୀ :** ଏପରି ଅଟେ, ଯେ ଯିଏ ପୂର୍ବରୁ ଶିବ ସ୍ୱରୂପ ହୋଇଥିବେ, ଏବେ ନୁହେଁ କିନ୍ତୁ ପୂର୍ବଜନ୍ମରେ ଶିବ ସ୍ୱରୂପ ହୋଇଥିବେ, ସେମାନେ 'ଶିବୋହମ୍' କହିପାରିବେ । ତାଙ୍କ ନକଲ ତାଙ୍କ ପରେ ତାଙ୍କ ଶିଷ୍ୟମାନେ, ଏହି ଲୋକମାନେ କଲେ । ଏବଂ ତାଙ୍କର ନକଲ ଏହି ଶିଷ୍ୟଙ୍କ ଶିଷ୍ୟମାନେ ଏବଂ ତାଙ୍କ ଶିଷ୍ୟମାନେ କଲେ । ଏହିପରି ସମସ୍ତେ ନକଲ କରନ୍ତି । ଏପରି କରିଲେ କ'ଣ ଶିବ ହୋଇଯିବେ ? ଘରେ ପ୍ରତିଦିନ ସ୍ତ୍ରୀ ସହ ଝଗଡ଼ା ହୁଏ ଏବଂ ସେଠି 'ଶିବୋହମ୍ ଶିବୋହମ୍' କରନ୍ତି । ଆରେ, ଶିବଙ୍କୁ କାହିଁକି ବଦନାମ କରୁଛୁ ? ସ୍ତ୍ରୀ ସହ ଝଗଡ଼ା କରେ ଏବଂ 'ଶିବୋହମ୍' କହେ ତେବେ ଶିବଙ୍କ ବଦନାମୀ ହେବ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ଯେତିକି ସମୟ 'ଶିବୋହମ୍' କହେ ସେତିକି ସମୟ ତ ସ୍ତ୍ରୀ ସହ ଲଢ଼େ ନାହିଁ ନା ?

**ଦାଦାଶ୍ରୀ :** ନା, 'ଶିବୋହମ୍' କହିପାରିବା ହିଁ ନାହିଁ । ତେବେ ତ ତା'କୁ ଆଗକୁ ଯିବା ପାଇଁ ମାର୍ଗଦର୍ଶନର ଆବଶ୍ୟକତା ହିଁ ରହିଲା ନାହିଁ । କାହିଁକିନା ଅନ୍ତିମ ଷ୍ଟେସନର କଥା ଚାଲିଲା, ଏଣୁ ପୁଣି ଅନ୍ୟ ଷ୍ଟେସନକୁ ଯିବାର ଆବଶ୍ୟକତା ହିଁ ରହିଲା ନାହିଁ ନା ! ଏଣୁ ଏପରି କହିପାରିବା ନାହିଁ । ଯେପର୍ଯ୍ୟନ୍ତ ନିଜ ପାଖକୁ ଅନ୍ତିମ ଷ୍ଟେସନର ଲାଇସେନ୍ସ ନ ଆସିଯାଇଛି, ସେପର୍ଯ୍ୟନ୍ତ 'ଶିବୋହମ୍' କହିପାରିବା ନାହିଁ । 'ମୁଁ ଶୁଦ୍ଧାତ୍ମା ଅଟେ' ଏପରି ମଧ୍ୟ କହିପାରିବା ନାହିଁ । ତାହାର *ଭାନ୍* ହେବା ଦରକାର । ଯାହା କିଛି କହୁଛ, ତାହାର *ଭାନ୍* ହେବା ଦରକାର । ଅଭାନାବସ୍ଥା (ବେହୋସି)ରେ ତ କେତେ ଲୋକ ଏପରି କହନ୍ତି ଯେ, 'ଅହମ୍ ବ୍ରହ୍ମାସ୍ମି ।' ଆରେ, କେଉଁଠିକାର ?! ବ୍ରହ୍ମ କ'ଣ ଏବଂ ବ୍ରହ୍ମାସ୍ମି କ'ଣ ?! ତୁ କ'ଣ ବୁଝିଛୁ, ଯେ ବାରମ୍ବାର କହି ଚାଲିଛୁ ?! ସେମାନେ ଏପରି ହିଁ ଶିଖାଇଥିଲେ, ଅହମ୍ ବ୍ରହ୍ମାସ୍ମି । କିନ୍ତୁ ତାହାର ଅନୁଭବ ହେବା ଦରକାର । ତୁମେ ଶୁଦ୍ଧାତ୍ମା ଅଟ କିନ୍ତୁ ନିଜକୁ ଶୁଦ୍ଧାତ୍ମାର ଅନୁଭବ ହେବା ଦରକାର । ଖାଲି ଏମିତି

କହିପାରିବା ନାହିଁ । ଶିବୋହମ୍ କହିପାରିବା କି ? ତୁମକୁ କ'ଣ ଲାଗୁଛି ? ଅନୁଭବ ହେବା ବିନା କହିପାରିବା ନାହିଁ । ତାହା ତ ଆମକୁ ବୁଝିବାର ଅଛି ଯେ ଶେଷରେ ମୋ ସ୍ୱରୂପ ଶିବ ଅଟେ । କିନ୍ତୁ ଏପରି କହିପାରିବା ନାହିଁ । ନହେଲେ କହିଲେ ପୁଣି ମଝିର ସମସ୍ତ ଷ୍ଟେସନ ରହିଯିବ ।

**ପ୍ରଶ୍ନକର୍ତ୍ତା :** 'ଶିବୋହମ୍' କହେ କିନ୍ତୁ ସେ ଅଜ୍ଞାନତାରେ ହିଁ କହେ ନା ? ବୁଝେନାହିଁ ତଥାପି କହେ ।

**ଦାଦାଶ୍ରୀ :** ହଁ, ଅଜ୍ଞାନତାରେ କହେ । କିନ୍ତୁ ମନରେ ତ ତା'କୁ ଏହିପରି ହିଁ ଥାଏ ଯେ 'ଆମର ଶିବୋହମ୍' ଅର୍ଥାତ୍ 'ମୁଁ ହିଁ ଶିବ' । ଏଣୁ ଏବେ କୌଣସି ପ୍ରଗତି କରିବା ବାକି ରହିଲା ନାହିଁ । ଏପରି ଭିତରେ ମାନିନିଏ । ଆଉ ଯେଉଁ ଲୋକେ 'ସୋହମ୍ ସୋହମ୍' କହନ୍ତି ସେପରି କହିପାରିବା । ସୋହମ୍ ର ଓଡ଼ିଆ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** 'ତାହା ମୁଁ ।'

**ଦାଦାଶ୍ରୀ :** 'ତାହା ମୁଁ' କହିପାରିବା । କିନ୍ତୁ ଶିବୋହମ୍ କହିପାରିବା ନାହିଁ । 'ତାହା ମୁଁ' ଅର୍ଥାତ ଯେଉଁ ଆତ୍ମା ଅଛି ଅବା ଭଗବାନ ଅଛନ୍ତି, ତାହା ହିଁ ମୁଁ । ଏପରି କହିପାରିବା । 'ତୁ ହିଁ, ତୁ ହିଁ' କହିପାରିବା କିନ୍ତୁ 'ମୁଁ ହିଁ, ମୁଁ ହିଁ' କହିପାରିବା ନାହିଁ । 'ତୁ ହିଁ, ତୁ ହିଁ' କହିପାରିବା, କାରଣ ସେତେବେଳେ ଅଜ୍ଞାନତାରେ ମଧ୍ୟ 'ମୁଁ' ଏବଂ 'ତୁ' ଦୁଇ ଅଲଗା ହିଁ ଅଟେ ପ୍ରଥମରୁ । ଏବଂ ଏପରି ଯେଉଁ କହନ୍ତି ସେଥିରେ ଭୁଲ ବି କ'ଣ ? ସେ ଦୁହେଁ ଅଲଗା ହିଁ ଅଟନ୍ତି ।

**ପ୍ରଶ୍ନକର୍ତ୍ତା :** ଶିବୋହମ୍ ଅର୍ଥାତ୍ କ'ଣ ?

**ଦାଦାଶ୍ରୀ :** ଯାହାକୁ 'ମୋତେ ଶିବ ହେବାର ଅଛି, ସେହି ଲକ୍ଷ୍ୟରେ ପହଞ୍ଚିବାର ଅଛି' ଏପରି ରହେ ସେ କହେ ଯେ ମୁଁ ଶିବୋହମ୍ ! ଶିବ ଅର୍ଥାତ୍ ନିଜେ ହିଁ କଲ୍ୟାଣ ସ୍ୱରୂପ ହୋଇଗଲା, ସେ ନିଜେ ହିଁ ମହାଦେବ ହୋଇଗଲା !

## ଅନ୍ତର ଅଛି ଶିବ ଏବଂ ଶଙ୍କର ମଧ୍ୟରେ

**ପ୍ରଶ୍ନକର୍ତ୍ତା :** ଶିବ ଏବଂ ଶଙ୍କର ମଧ୍ୟରେ କ'ଣ ଅନ୍ତର ଅଛି ? ଶିବଙ୍କୁ କଲ୍ୟାଣ ପୁରୁଷ କହିଲେ, ତେବେ କ'ଣ ଶଙ୍କର ଦେବଲୋକରେ ଅଛନ୍ତି ?

**ଦାଦାଶ୍ରୀ :** ଶଙ୍କର ତ ଜଣେ ନୁହେଁ, ଅନେକ ଶଙ୍କର ଅଛନ୍ତି । ଯେବେଠୁ ସମତାରେ ଆସେ, ସେବେଠାରୁ 'ସମ୍ କର' ଅର୍ଥାତ ଶଙ୍କର କୁହାଯାଏ । ଅର୍ଥାତ ଅନେକ ଶଙ୍କର ଅଛନ୍ତି କିନ୍ତୁ ସେ ସମସ୍ତେ ଉଚ୍ଚଗତିରେ ଅଛନ୍ତି । ଯିଏ 'ସମ୍' କରେ, ସେ ଶଙ୍କର ।

'ଓଁ ନମଃ ଶିବାୟ' ବୋଲିବା ମାତ୍ରେ ଗୋଟିଏ ପଟେ ଶିବ ସ୍ୱରୂପ ନଜର ଆସେ ଏବଂ ଅନ୍ୟ ପଟେ ଆମେ ବୋଲିଚାଲିବା ।

## ତାହା ଅଟେ ପରୋକ୍ଷ ଭକ୍ତି

ତୁମେ ମହାଦେବଙ୍କୁ ଭଜୁଛ । କିନ୍ତୁ ମହାଦେବ ତୁମ ଭିତରେ ବସିଥିବା ଶୁଦ୍ଧାତ୍ମାଙ୍କୁ ଚିଠି ଲେଖନ୍ତି, ଯେ ନିଅ, ଏହା ତୁମ ମାଲ୍ ଆସିଛି, ଏହା ମୋର ନୁହେଁ । ଏହା ପରୋକ୍ଷ ଭକ୍ତି କୁହାଯାଏ । ଏହିପରି କୃଷ୍ଣଙ୍କୁ ଭଜିବା ଅବା ଆଉ କାହାକୁ ଭଜିବା, ତାହା ପରୋକ୍ଷ ଭକ୍ତି ଅଟେ । ଅତଃ ଏ ମୂର୍ତ୍ତି ସବୁ ନଥିଲେ କ'ଣ ହୋଇଥାନ୍ତା ? ସେ ପ୍ରକୃତ ଭଗବାନଙ୍କୁ ଭୁଲି ଯାଇଥାନ୍ତେ ଏବଂ ମୂର୍ତ୍ତିକୁ ମଧ୍ୟ ଭୁଲି ଯାଇଥାନ୍ତେ, ଏଥିପାଇଁ ସେମାନେ ଜାଗା-ଜାଗାରେ ମୂର୍ତ୍ତି ସ୍ଥାପନା କଲେ । ମହାଦେବଙ୍କ ମନ୍ଦିର ଆସେ ଏବଂ ଦର୍ଶନ କରେ । ଦେଖିବ ତେବେ ଦର୍ଶନ ହେବ ନା ! ଦେଖିବ ତେବେ ମନେ ପଡ଼ିବ ନା ନାହିଁ ? ଏବଂ ମନେ ପଡ଼େ ତେବେ ଦର୍ଶନ କରେ । ସେଥିପାଇଁ ଏ ମୂର୍ତ୍ତି ରଖାଯାଇଛି । କିନ୍ତୁ ଏସବୁ ମିଳିମିଶି ଶେଷରେ ତ ଭିତରବାଲାକୁ ଚିହ୍ନିବା ପାଇଁ ହିଁ ଅଟେ ।

## ସଚ୍ଚିଦାନନ୍ଦରେ ସମାହିତ ସର୍ବ ମନ୍ତ୍ର

ଏହି ତ୍ରିମନ୍ତ୍ର ଅଛି ସେଥିରେ ପ୍ରଥମେ ଜୈନଙ୍କ ମନ୍ତ୍ର ଅଛି, ପରେ ବାସୁଦେବଙ୍କ ଏବଂ ଶିବଙ୍କ ମନ୍ତ୍ର ଅଛି । ଏବଂ ସଚ୍ଚିଦାନନ୍ଦରେ ତ ହିନ୍ଦୁ, ମୁସଲିମ୍, ବିଦେଶୀ ଏ ସମସ୍ତଙ୍କ ମନ୍ତ୍ର ଆସିଗଲା ।

ଏହି ସବୁ ମନ୍ତ୍ରକୁ ଯଦି ସାଥିରେ ବୋଲିବା, ଏହି ମନ୍ତ୍ର ନିଷ୍ପକ୍ଷପାତୀ ରୂପରେ ବୋଲିବା ତେବେ ଭଗବାନ ଆମ ଉପରେ ଖୁସି ହୁଅନ୍ତି । ଯଦି ଜଣେ ବ୍ୟକ୍ତିର ପକ୍ଷ ନେବା ଯେ, 'ଓଁ ନମଃ ଶିବାୟ, ଓଁ ନମଃ ଶିବାୟ' କେବଳ ଏହା ହିଁ ବୋଲିଚାଲିବା ତେବେ ସେମାନେ ସମସ୍ତେ ଖୁସି ହେବେ ନାହିଁ । ଏହାଦ୍ୱାରା ତ ସବୁ ଦେବାଦେବୀ ଖୁସି ହୋଇଯାନ୍ତି ।

ଯେଉଁମାନେ ମତରେ ପଡ଼ି ରହିଥିବେ ଏହା ତାଙ୍କ କାମ ନୁହେଁ । ମତରୁ ବାହାରକୁ ବାହାରିବେ, ସେତେବେଳେ କାମ ଦେବ ।

କିଭଳି-କିଭଳି ମନୁଷ୍ୟ ହିନ୍ଦୁସ୍ତାନରେ ଅଛନ୍ତି, ଏବେ ମଧ୍ୟ ! ପୁରା ହିନ୍ଦୁସ୍ତାନ ଶେଷ ହୋଇଯାଇନାହିଁ । ଏ ହିନ୍ଦୁସ୍ତାନ ପୁରା ଶେଷ ହୋଇପାରିବ ନାହିଁ । ଏହା ତ ମୂଳତଃ ଆର୍ଯ୍ୟଙ୍କ ଭୂମି ଅଟେ । ଏବଂ ଯେଉଁ ଭୂମିରେ ତୀର୍ଥଙ୍କରଙ୍କ ଜନ୍ମ ହେଲା ! କେବଳ ତୀର୍ଥଙ୍କର ହିଁ ନୁହେଁ, ତେଷଠି ଶଲାକା ପୁରୁଷ ଯେଉଁ ଦେଶରେ ଜନ୍ମ ନିଅନ୍ତି, ଏହା ସେହି ଦେଶ ଅଟେ !

## ବୋଲ ପାହାଡ଼ି ସ୍ୱରରେ

ଏ ମନ ଭିତରେ 'ନମୋ ଅରିହନ୍ତାଣଂ' ଏବଂ ସବୁକିଛି କହିବା ମାତ୍ର ମନରେ ଅଲଗା କିଛି ଚାଲୁଥିବ, ଓଲଟା-ସିଧା । ତେବେ ତାହାଦ୍ୱାରା କିଛି ପରିଣାମ ମିଳେ ନାହିଁ । ସେଥିପାଇଁ କହିଥିଲି ଯେ ଏକାନ୍ତରେ ଯାଇ, ଉଚ୍ଚ ପାହାଡ଼ି ସ୍ୱରରେ ବୋଲ ! ମୁଁ ତ ଯଦି ଉଚ୍ଚସ୍ୱରରେ ନ ବୋଲିବି ତେବେ ଚଳିବ କିନ୍ତୁ ତୁମକୁ ଉଚ୍ଚସ୍ୱରରେ ବୋଲିବା ଉଚିତ । ମୋର ତ ମନ ହିଁ ଅଲଗା ପ୍ରକାରର ଅଟେ ନା !

ଏବେ ଏପରି ଏକାନ୍ତ ଜାଗା ଯଦି ଯାଅ ତେବେ ସେଠାରେ ଏହି ତ୍ରିମନ୍ତ୍ର ଜୋରରେ ବୋଲିବ । ସେ ନଦୀ-ନାଳ ଯଦି କେବେ ବୁଲିବାକୁ ଯିବ ତେବେ ଜୋରରେ ବୋଲିବ, ଯେପରି ମୁଣ୍ଡରେ ଧମ୍-ଧମ୍ ହେବ ।

**ପ୍ରଶ୍ନକର୍ତ୍ତା :** ଜୋରରେ ବୋଲିବା ଦ୍ୱାରା ଯେଉଁ ବିସ୍ଫୋଟ ହୁଏ ତାହାର ପ୍ରଭାବ ସବୁ ଜାଗାରେ ପହଞ୍ଚେ । ସେଥିପାଇଁ ଏହା ଜଣା ପଡୁଛି ଯେ ଜୋରରେ ବୋଲିବାର ପ୍ରୟୋଜନ କ'ଣ !

**ଦାଦାଶ୍ରୀ :** ଉଚ୍ଚସ୍ୱରରେ ବୋଲିଲେ ବହୁତ ଲାଭ ଅଛି । କାରଣ ଯେପର୍ଯ୍ୟନ୍ତ ଉଚ୍ଚସ୍ୱରରେ ନ ବୋଲେ ସେପର୍ଯ୍ୟନ୍ତ ମନୁଷ୍ୟର ସମସ୍ତ ଭିତର ମେସିନାରୀ (ଅନ୍ତଃକରଣ) ବନ୍ଦ ହୁଏ ନାହିଁ । ଏହି କଥା ପ୍ରତ୍ୟେକ ମନୁଷ୍ୟ ପାଇଁ ଅଟେ । ମୋର ତ ଭିତର ମେସିନାରୀ ବନ୍ଦ ହିଁ ଥାଏ । କିନ୍ତୁ ଏ ଅନ୍ୟ ଲୋକେ ଯଦି ଉଚ୍ଚସ୍ୱରରେ ନ ବୋଲିବେ, ତେବେ ତାଙ୍କର ଭିତର ମେସିନାରୀ ବନ୍ଦ ହେବ ନାହିଁ । ସେପର୍ଯ୍ୟନ୍ତ ଏକତ୍ୱ ପ୍ରାପ୍ତ ହୁଏ ନାହିଁ । ସେଥିପାଇଁ ମୁଁ କହେ ଯେ ଉଚ୍ଚସ୍ୱରରେ ବୋଲିବ । କାରଣ ଯଦି ଉଚ୍ଚସ୍ୱରରେ ବୋଲିବା ତେବେ ପୁଣି ମନ ବନ୍ଦ ହୋଇଗଲା, ବୁଦ୍ଧି ଖଲାସ୍ ହୋଇଗଲା, ଆଉ ଯଦି ଧୀରେ-ଧୀରେ ବୋଲିବା, ତେବେ ଭିତରେ ମନ ଚୁନ୍-ଚୁନ୍ କରେ, ଏପରି ହୁଏ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ହୁଏ ।

**ଦାଦାଶ୍ରୀ :** ବୁଦ୍ଧି ମଧ୍ୟ ଭିତରେ ଏପରି ଦଖଲ ଦେଇ ଚାଲିଥାଏ, ସେଥିପାଇଁ ମୁଁ କହେ ଯେ ଉଚ୍ଚସ୍ୱରରେ ବୋଲିବା ଉଚିତ । ଆଉ ଯଦି ଏକାନ୍ତରେ ଯିବ ତେବେ ଏତେ ଜୋରରେ ବୋଲିବ ଯେ ଯେମିତି ଆକାଶ ଉଡ଼ାଇ ଦେବାର ଅଛି, ଏମିତି ବୋଲିବ । କାରଣ ଉଚ୍ଚସ୍ୱରରେ ବୋଲିବା ଦ୍ୱାରା ଭିତରେ ସବୁ (ସମସ୍ତ ଅନ୍ତଃକରଣ) ବନ୍ଦ ହୋଇଯାଏ ।

## ମନ୍ତ୍ରରୁ ହୁଏ ନାହିଁ ଆତ୍ମଜ୍ଞାନ

**ପ୍ରଶ୍ନକର୍ତ୍ତା :** ଗୁରୁଙ୍କ ଦିଆଯାଇଥିବା ମନ୍ତ୍ରଜପ କରିବା ଦ୍ୱାରା କ'ଣ ଆତ୍ମଜ୍ଞାନ ଶୀଘ୍ର ହୁଏ ?

**ଦାଦାଶ୍ରୀ :** ନା । କିନ୍ତୁ ସଂସାରରେ ବିଘ୍ନ କମ ହେବ, କିନ୍ତୁ ଏ ତିନି ମନ୍ତ୍ର (ତ୍ରିମନ୍ତ୍ର) ଯଦି ସାଥିରେ ବୋଲିବ ତେବେ ।

**ପ୍ରଶ୍ନକର୍ତ୍ତା :** ତେବେ ଏହି ମନ୍ତ୍ର ଅଜ୍ଞାନତା ଦୂର କରିବା ପାଇଁ ହିଁ ଅଟେ ନା ?

**ଦାଦାଶ୍ରୀ :** ନା, ତ୍ରିମନ୍ତ୍ର ତ ତୁମ ସଂସାରର ବିଘ୍ନ ଦୂର କରିବା ପାଇଁ ଅଟେ । ଅଜ୍ଞାନତା ଦୂର କରିବା ପାଇଁ ତ ମୁଁ ଯେଉଁ ଆତ୍ମଜ୍ଞାନ ତୁମକୁ ଦେଇଛି (ଜ୍ଞାନବିଧି ଦ୍ୱାରା), ତାହା ଅଟେ ।

## ତ୍ରିମନ୍ତ୍ର ଦ୍ୱାରା, ଶୁଳିର ବେଦନା ଛୁଞ୍ଚି ପରି ଲାଗେ

ଜ୍ଞାନୀପୁରୁଷ ବେକାରରେ ପରିଶ୍ରମ କରାନ୍ତି ନାହିଁ । କମ୍‌ରୁ କମ୍ ପରିଶ୍ରମ କରାନ୍ତି । ସେଥିପାଇଁ ତୁମକୁ ଏହି ତ୍ରିମନ୍ତ୍ର ସକାଳ-ସନ୍ଧ୍ୟା ପାଞ୍ଚ-ପାଞ୍ଚ ଥର ବୋଲିବା ପାଇଁ କହିଛି ।

ଏ ମନ୍ତ୍ର କାହିଁକି ବୋଲିବା ଯୋଗ୍ୟ ଅଟେ, କାହିଁକିନା ଏହି ଜ୍ଞାନ ପରେ ତୁମେ ଶୁଦ୍ଧାତ୍ମା ତ ହେଲ କିନ୍ତୁ ପଡ଼ୋଶୀ ରହିଲା କିଏ ? ଚନ୍ଦୁଭାଇ (ପାଠକ ଚନ୍ଦୁଭାଇ ସ୍ଥାନରେ ସ୍ୱୟଂକୁ ବୁଝନ୍ତୁ) । ଏବେ ଯଦି ଚନ୍ଦୁଭାଇଙ୍କୁ କିଛି ଅସୁବିଧା ଆସେ ତେବେ ତୁମେ କହିବ ଯେ, 'ଚନ୍ଦୁଭାଇ, ଥରେ ଅଧେ ଏହି ତ୍ରିମନ୍ତ୍ର ବୋଲ, କିଛି ଅସୁବିଧା ଥିବ ତେବେ ଏହାଦ୍ୱାରା କମ୍ ହୋଇଯିବ ।' କାହିଁକିନା ସେ ସବୁପ୍ରକାରର ସଂସାର ବ୍ୟବହାରରେ ଅଛନ୍ତି । ତାଙ୍କୁ ଲକ୍ଷ୍ମୀ, ନେବା-ଦେବା ସବୁକିଛି ଅଛି । ତ୍ରିମନ୍ତ୍ର ବୋଲିବା ଦ୍ୱାରା ଆସିବାକୁ ଥିବା ଅସୁବିଧା ଦୂର ହୋଇଯିବ । ପରେ ଅସୁବିଧା ନିଜର ନୈମିତ୍ତିକ ପ୍ରଭାବ ଦେଖାଇବ ମାତ୍ର ଏତେ ବଡ଼ ପଥର ଯଦି ବାଜିବାର ଥିବ ତାହା ସାମାନ୍ୟ ଗୋଡ଼ି ପରି ବାଜିବ । ସେଥିପାଇଁ ଏହି ତ୍ରିମନ୍ତ୍ର ଦେଇଛି ।

କିଛି ବିଘ୍ନ ଯଦି ଆସିବାକୁ ଥିବ ତେବେ ଏହି ତ୍ରିମନ୍ତ୍ର ଅଧା ଘଣ୍ଟା, ଏକ ଘଣ୍ଟା ଧରି ବୋଲିବ । ପୁରା ଗୁଣସ୍ଥାନ ପୂର୍ଣ୍ଣ କରିଦେବ (ଏକ ଗୁଣସ୍ଥାନ ୪୮ ମିନିଟ ର ହୋଇଥାଏ) । ନହେଲେ ପ୍ରତିଦିନ ଏହା ପାଞ୍ଚଥର ବୋଲିବ । କିନ୍ତୁ ଏ ସବୁ ମନ୍ତ୍ର ସାଥିରେ ବୋଲିବ ଏବଂ ସଚ୍ଚିଦାନନ୍ଦ ବି ବୋଲିବ । ସଚ୍ଚିଦାନନ୍ଦରେ ସବୁଲୋକଙ୍କ ମନ୍ତ୍ର ଆସିଯାଏ ।

ତ୍ରିମନ୍ତ୍ରର ରହସ୍ୟ ଏହା ଯେ ତୁମର ସମସ୍ତ ସାଂସାରିକ ବିଘ୍ନ ଦୂରେଇଯିବ । ଯଦି ତୁମେ ପ୍ରତିଦିନ ସକାଳେ ବୋଲିବ ତେବେ ସମସ୍ତ ବିଘ୍ନ ଦୂରେଇଯିବ । ତୁମକୁ ବୋଲିବା ପାଇଁ ଯଦି ପୁସ୍ତକ ଦରକାର ତେବେ ଗୋଟିଏ ପୁସ୍ତକ ଦେଉଛି । ସେଥିରେ ଏହି ତ୍ରିମନ୍ତ୍ର ଲେଖାହୋଇଛି । ସେ ପୁସ୍ତକ ଏଠାରୁ ନେଇଯିବ ।

ଏହି ତ୍ରିମନ୍ତ୍ର ବୋଲିବା ଦ୍ୱାରା ଅଲଗା ନୂଆ ପାପ ବାନ୍ଧିହୁଏ ନାହିଁ, ଏଠି-ସେଠି ଓଲଟା ରାସ୍ତାରେ ଭଟକି ଯାଆନ୍ତି ନାହିଁ ଏବଂ ପୁରୁଣା କର୍ମ ପୂରା ହୋଇଚାଲେ ।

ଏହି ତ୍ରିମନ୍ତ୍ର ତ ଏପରି ଅଟେ ଯେ, ନିର୍ବୋଧ ଯଦି ବୋଲେ ତେବେ ମଧ୍ୟ ଲାଭ ହେବ ଏବଂ ବୁଦ୍ଧିମାନ ଯଦି ବୋଲେ ତେବେ ମଧ୍ୟ ଲାଭ ହେବ । କିନ୍ତୁ ବୁଦ୍ଧିମାନକୁ ଅଧିକ ଲାଭ ହେବ ଏବଂ ନିର୍ବୋଧକୁ ମୁହଁରେ ବୋଲିଲା କେବଳ ସେତିକି ଲାଭ ହେବ । ଗୋଟିଏ କେବଳ ଏହି ଟେପରେର୍କଡ଼ (ମେସିନ୍) ବୋଲେ ନା, ତା'କୁ ଲାଭ ହେବ ନାହିଁ । କିନ୍ତୁ ଯାହା ଭିତରେ ଆତ୍ମା ଅଛି, ସେ ଯଦି ବୋଲିବ ତେବେ ତା'କୁ ଲାଭ ହେବ ନିଶ୍ଚିତ !

ଏହି ଜଗତ ଶବ୍ଦରୁ ହିଁ ଉତ୍ପନ୍ନ ହୋଇଛି । ଭଲ ବ୍ୟକ୍ତିଙ୍କ ଶବ୍ଦ ଯଦି ବୋଲିବ ତେବେ ତୁମର କଲ୍ୟାଣ ହୋଇଯିବ ଏବଂ ଖରାପ ବ୍ୟକ୍ତିର ଶବ୍ଦ ଯଦି ବୋଲିବ ତେବେ ଓଲଟା ହେବ । ସେଥିପାଇଁ ଏସବୁ ବୁଝିବାର ଅଛି ।

## ଲକ୍ଷ୍ୟ ତ ଦରକାର କେବଳ ମୋକ୍ଷର

କିଛି ପଚାରିବାକୁ ଥିବ ତେବେ ପଚାର, ହଁ । ଏଠି ସବୁକିଛି ପଚାରି ପାରିବ । ମୋକ୍ଷରେ ଯିବାର ଅଛି ନା ? ଯେପରି ମୋକ୍ଷରେ ଯାଇପାରିବା ସେଭଳି ସବୁ ପ୍ରଶ୍ନ ଏଠାରେ ପଚାରି ପାରିବ, ଯଦି ପଚାରିବାକୁ ଚାହଁ ତେବେ । ମନର ସମାଧାନ ହେବ, ତେବେଯାଇ ମୋକ୍ଷରେ ଯାଇପାରିବା ନା ? ନହେଲେ ମୋକ୍ଷରେ କିପରି ଯାଇପାରିବା ? ଭଗବାନଙ୍କ ଶାସ୍ତ୍ର ତ ସବୁ ଅଛି, କିନ୍ତୁ ଶାସ୍ତ୍ର ବୁଝିହେବା ଦରକାର ନା ? ଅନୁଭବି ଜ୍ଞାନୀପୁରୁଷଙ୍କ ବିନା ତାହା ବୁଝିହେବ ହିଁ ନାହିଁ, ଓଲଟା ଭୁଲ ରାସ୍ତାରେ ଚାଲିଯିବ ।

**ପ୍ରଶ୍ନକର୍ତ୍ତା :** ନବକାର ମନ୍ତ୍ରର ଜପ କେଉଁ ଲକ୍ଷ୍ୟରେ କରିବା ଉଚିତ ?

**ଦାଦାଶ୍ରୀ :** ତାହା ତ କେବଳ ମୋକ୍ଷର ଲକ୍ଷ୍ୟରେ ହିଁ କରିବା ଉଚିତ । ଅନ୍ୟ କୌଣସି ଲକ୍ଷ୍ୟ ନହେବା ଉଚିତ । 'ମୋ ମୋକ୍ଷ ପାଇଁ କରୁଛି ।' ଏପରି ମୋକ୍ଷର ହେତୁରେ ଯଦି କରିବ ତେବେ ସବୁ ପ୍ରାପ୍ତ ହେବ । ଆଉ ଯଦି ସୁଖର ହେତୁରେ କରିବ ତେବେ କେବଳ ସୁଖ ପ୍ରାପ୍ତ ହେବ, ମୋକ୍ଷର ପ୍ରାପ୍ତି ହେବ ନାହିଁ । ନବକାର ମନ୍ତ୍ର ତ ମୋକ୍ଷ ପାଇଁ ସହାୟକ ଅଟେ । ନବକାର ମନ୍ତ୍ର ବ୍ୟବହାରରୁ ଅଟେ, ନିଶ୍ଚୟରୁ ନୁହେଁ ।

ଏ ନବକାର ମନ୍ତ୍ର କାହିଁକି ଭଜିବାର ଅଛି ? ଏହି ପଞ୍ଚ ପରମେଷ୍ଠି ଭଗବନ୍ତ ହିଁ ମୋକ୍ଷର ସାଧନ ଅଟନ୍ତି । ଏହି ପାଞ୍ଚଟି ସର୍ବଶ୍ରେଷ୍ଠ ପଦ ଅଟେ । ଏହା ହିଁ ନିଜର ଧ୍ୟେୟ ରଖିବ । ଏମାନଙ୍କ ପାଖରେ ଭଜନା କରିବ, ଏମାନଙ୍କ ପାଖରେ ବସି ରହିବ ଏବଂ ମରିବାର ଥିଲେ ମଧ୍ୟ ସେଇଠି ମରିବ ।  ହଁ, ଅନ୍ୟ ଜାଗାରେ ମରିବ ନାହିଁ । ମୁଣ୍ଡରେ ପଡ଼ିବାର ଅଛି ତେବେ ଏମାନଙ୍କ ମୁଣ୍ଡରେ ଆସି ପଡ଼ । ଯଦି ଅକର୍ମି ମୁଣ୍ଡରେ ପଡ଼ିବ ତେବେ କ'ଣରୁ କ'ଣ ହୋଇଯିବ ।

## ମନ୍ତ୍ର ଦେବାବାଲାର ଯୋଗ୍ୟତା

**ପ୍ରଶ୍ନକର୍ତ୍ତା :** ଆଜିର ଯୁଗରେ ମନ୍ତ୍ର ସାଧନା ଶୀଘ୍ର ଫଳ କାହିଁକି ଦେଉନାହିଁ ? ମନ୍ତ୍ରରେ ତ୍ରୁଟି ଅଛି ନା ସାଧକ ଠାରେ ତ୍ରୁଟି ଅଛି ?

**ଦାଦାଶ୍ରୀ :** ମନ୍ତ୍ରରେ ତ୍ରୁଟି ନାହିଁ କିନ୍ତୁ ମନ୍ତ୍ରର ବ୍ୟବସ୍ଥାରେ ତ୍ରୁଟି ଅଛି । ସମସ୍ତ ମନ୍ତ୍ର ନିଷ୍ପକ୍ଷପାତୀ ହେବା ଉଚିତ । ପକ୍ଷପାତବାଲା ମନ୍ତ୍ର ଫଳ ଦେବେ ନାହିଁ । ନିଷ୍ପକ୍ଷପାତୀ ମନ୍ତ୍ର ସାଥିରେ ଥିବା ଉଚିତ । କାରଣ ମନ ନିଜେ ହିଁ ନିଷ୍ପକ୍ଷତାକୁ ଖୋଜୁଛି । ତେବେଯାଇ ତା'କୁ ଶାନ୍ତି ହେବ । ଭଗବାନ ନିଷ୍ପକ୍ଷପାତୀ ଅଟନ୍ତି । ଏଣୁ ମନ୍ତ୍ର ସାଧନା ସେତେବେଳେ ଫଳ ଦେବ ଯଦି ସେ ମନ୍ତ୍ର ଦେବାବାଲା ମଣିଷ ଶୀଳବାନ ହୋଇଥିବ । ମନ୍ତ୍ର ଦେବାବାଲା ଏମିତି-ସେମିତି ନହେବା ଉଚିତ, ଲୋକପୂଜ୍ୟ ହୋଇଥିବା ଉଚିତ । ଲୋକଙ୍କ ହୃଦୟରେ ବିରାଜମାନ ହୋଇଥିବା ଉଚିତ ।

## ତେବେ ମନ୍ତ୍ରଦ୍ୱାରା ଆତ୍ମଶୁଦ୍ଧି ସମ୍ଭବ ?

**ପ୍ରଶ୍ନକର୍ତ୍ତା :** ନବକାର ମନ୍ତ୍ର ସଂସାରରେ ସହାୟକ ହୁଏ ନା ନାହିଁ ?

**ଦାଦାଶ୍ରୀ :** ନବାକର ମନ୍ତ୍ର ସହାୟକ ହେବ ନା ! ତାହା ତ ଭଲ ଜିନିଷ ଅଟେ ।

**ପ୍ରଶ୍ନକର୍ତ୍ତା :** ତାହା ବୋଲିଲେ କ'ଣ ଧୀରେ-ଧୀରେ ଆତ୍ମାର ଶୁଦ୍ଧି କରେ ?

**ଦାଦାଶ୍ରୀ :** କିନ୍ତୁ ଆମକୁ ଆତ୍ମାର ଶୁଦ୍ଧି କରିବାର ନାହିଁ, କାହିଁକିନା ଆତ୍ମା ଶୁଦ୍ଧ ହିଁ ଅଛି । ନବକାର ମନ୍ତ୍ର ତ ଭଲ ଲୋକଙ୍କୁ ନମସ୍କାର କରିବା ଦ୍ୱାରା, ଦର୍ଶନ କରିବା ଦ୍ୱାରା ତୁମକୁ ଉପରକୁ ଉଠାଏ । କିନ୍ତୁ ଯଦି ଅର୍ଥ ବୁଝି ବୋଲିବା ତେବେ ! ଅତଃ ନବକାର ମନ୍ତ୍ରର ଅର୍ଥ ବୁଝିବାକୁ ପଡ଼ିବ । ଏ ତ ଶୁଆ 'ରାମ ରାମ' ବୋଲେ, ଏହାଦ୍ୱାରା ସେ 'ରାମ'ଙ୍କୁ ବୁଝିପାରିବ କି ? କ'ଣ ଶୁଆ 'ରାମ ରାମ' ବୋଲେ

ନାହିଁ ? ସେହିପରି ଏ ଲୋକେ ନବକାର ମନ୍ତ୍ର ବୋଲୁଛନ୍ତି । ଏହାର ଅର୍ଥ କ'ଣ ? ନବକାର ମନ୍ତ୍ର ତ ଜ୍ଞାନୀପୁରୁଷଙ୍କ ପାଖରୁ ବୁଝିବା ଉଚିତ ।

## କେଉଁ ଦୃଷ୍ଟି ସହ ନବକାର ଭଜିବା ?

ନବକାର ମନ୍ତ୍ର କ'ଣ, ଏହା ବୁଝୁଥିବା ଲୋକ କେତେଜଣ ଥିବେ ? ନହେଲେ ଏହି ନବକାର ମନ୍ତ୍ର ତ ଏପରି ମନ୍ତ୍ର ଅଟେ ଯେ କେବଳ ଗୋଟିଏ ଥର ଯଦି ନବକାର ବୋଲିଥିବ ତେବେ କେତେଦିନ ପର୍ଯ୍ୟନ୍ତ ତାହାର ଫଳ ମିଳୁଥାଏ । ଅର୍ଥାତ ଯାହା ରକ୍ଷଣ ଦିଏ, ଏପରି ଅଟେ ନବକାର ମନ୍ତ୍ରର ଫଳ । କିନ୍ତୁ କେହି ଗୋଟିଏ ବି ନବକାର ପ୍ରକୃତ ରୂପରେ ବୁଝି ବୋଲିଲେ ନାହିଁ । ଏମାନେ ତ ଜପ ଜପି ଚାଲିଛନ୍ତି କିନ୍ତୁ ପ୍ରକୃତ ଜପ କେହି ଜପି ହିଁ ନାହିଁ ନା !

ନବକାର ମନ୍ତ୍ର ତ ତୁମକୁ ବୋଲିବା କେଉଁଠି ଆସୁଛି ? ଏମିତି ହିଁ ବୋଲୁଛ । ନବକାର ମନ୍ତ୍ର ବୋଲିବାବାଲାକୁ ଚିନ୍ତା ହୁଏ ନାହିଁ । ନବକାର ମନ୍ତ୍ର ଏତେ ସୁନ୍ଦର ଅଟେ ଯେ କେବଳ ଚିନ୍ତା ହିଁ ନୁହେଁ, କିନ୍ତୁ କ୍ଳେଶ ମଧ୍ୟ ଚାଲିଯାଏ ତା' ଘରୁ । କିନ୍ତୁ ବୋଲିବା ଆସୁ ହିଁ ନାହିଁ ନା ! ଯଦି ବୋଲିବା ଆସିଥାନ୍ତା ତେବେ ଏପରି ହୋଇନଥାନ୍ତା ।

କେହି ବି ନବକାର ମନ୍ତ୍ର ଦେଇଦେଲା ଏବଂ ଆମେ ବୋଲିବାକୁ ଲାଗିଲେ ତାହାର ଅର୍ଥ ନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା ତ ଆପଣଙ୍କ ପାଖରୁ ନେବୁ ।

**ଦାଦାଶ୍ରୀ :** ଲାଇସେନ୍ସବାଲା ଦୋକାନ ହୋଇଥିବ ଏବଂ ସେଠାରୁ ନେଇଥିବ ତେବେ ଚଳିବ । ଯଦି ବିନା ଲାଇସେନ୍ସବାଲା ପାଖରୁ ନେବ ତେବେ କ'ଣ ହେବ ? ସେ ନକଲି ମାଲ୍ ଧରେଇ ଦେବ । ଶବ୍ଦ ସେଇଆକୁ ସେଇଆ ହୋଇଥିବ କିନ୍ତୁ ମାଲ୍ ନକଲି ଥିବ । ତୁମକୁ ନକଲି ମାଲ୍ ପସନ୍ଦ ନା ଅସଲି ପସନ୍ଦ ?

ନବକାର ମନ୍ତ୍ର ଅର୍ଥ ବୁଝି ବୋଲିବା ଉଚିତ । ଅର୍ଥ ବୁଝି ବୋଲିଲେ ସବୁ ଭଗବନ୍ତଙ୍କୁ ପହଞ୍ଚିବ ଏବଂ ଆମ ନମସ୍କାର ତୁରନ୍ତ ସ୍ୱୀକାର ହୋଇଯିବ । ଏହି 'ଦାଦା ଭଗବାନ'ଙ୍କ ଥ୍ରୁ (ମାଧ୍ୟମରେ) ବୋଲିଲ ମାନେ ପହଞ୍ଚି ହିଁ ଯାଏ ଏବଂ ଫଳ ପ୍ରାପ୍ତ ହୁଏ । ଏ ତ ପ୍ରଥମ ବର୍ଷ ବ୍ୟାପାର କଲା ଏବଂ ଏତେ ଫଳ ପ୍ରାପ୍ତ ହେଲା, ତେବେ ଯଦି ଦଶ ବର୍ଷ ଯାଏଁ ବ୍ୟାପାର ଚାଲୁ ରଖେ ତେବେ ? ସେ ଦୋକାନ କିଭଳି ଜମିଯିବ ?

'ନମୋ ଅରିହନ୍ତାଣଂ' କହିବା ମାତ୍ରେ ସୀମନ୍ଧର ସ୍ୱାମୀ ନଜର ଆସିବା ଉଚିତ । ପୁଣି 'ନମୋ ସିଦ୍ଧାଣଂ' ତାହା ନଜର ଆସେ ନାହିଁ କିନ୍ତୁ ଲକ୍ଷ୍ୟରେ ରହିବା ଉଚିତ ଯେ

ମୁଁ ଅନନ୍ତ ଜ୍ଞାନବାଲା ଅଟେ, ମୁଁ ଅନନ୍ତ ଦର୍ଶନବାଲା ଅଟେ । (କେବଳଜ୍ଞାନ, କେବଳଦର୍ଶନ ସେ ହିଁ ପରମଜ୍ୟୋତି ସ୍ୱରୂପ ଭଗବାନ ଅଟନ୍ତି ।) ସେ ଗୁଣ ଲକ୍ଷ୍ୟରେ ଥିବା ଉଚିତ । 'ନମୋ ଆୟରିୟାଣଂ' ସେ ଆଚାର୍ଯ୍ୟ ଭଗବାନ ଯିଏ ନିଜେ *ଆଚାର* ର ପାଳନ କରନ୍ତି ଏବଂ ଅନ୍ୟମାନଙ୍କୁ ପାଳନ କରାନ୍ତି । ଏସବୁ ଲକ୍ଷ୍ୟରେ ରହିବା ଉଚିତ ।

## ପ୍ରାପ୍ତ କରାଏ ଯଥାର୍ଥ ଫଳ

ଏମାନେ ସବୁ ନବକାର ମନ୍ତ୍ର ଭଜନ୍ତି, ତାହାର ଏକରେ ତ ପ୍ରାକୃତିକ ଫଳ ଆସିବ, ଭୌତିକରେ ସୁନ୍ଦର ଫଳ ଆସିବ । କିନ୍ତୁ ମୁଁ ତ ଏ ସମସ୍ତଙ୍କୁ ସେ ଯେଉଁ 'ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ରରେ ବିଚରିତ...' ବୋଲାଏ ନା, ସେ ନମସ୍କାର ଏହି ନବକାର ମନ୍ତ୍ରରୁ ନିଆଯାଇଛି । ଏ ଯେଉଁ ନମସ୍କାର ବୋଲାଏ, ତାହା ଏକ୍‌ଜାକ୍ଟ ତାଙ୍କୁ ପହଞ୍ଚେ ଏବଂ ତୁରନ୍ତ ତାହାର ଏକ୍‌ଜାକ୍ଟ (ଯଥାର୍ଥ) ଫଳ ମିଳେ, ଏବଂ ନବକାର ମନ୍ତ୍ରର ଫଳ ତ ଯେବେ ଆସେ ତେବେ ଠିକ୍ ।

ଲକ୍ଷ ଲକ୍ଷ ଲୋକ ନବକାର ମନ୍ତ୍ର ବୋଲନ୍ତି, ତାହା କାହାକୁ ପହଞ୍ଚେ ? ପ୍ରକୃତିର ନିୟମ ଏପରି ଅଟେ ଯେ ଯାହାର ଅଟେ ତାଙ୍କୁ ହିଁ ପହଞ୍ଚେ, କିନ୍ତୁ ଯଦି ହୃଦୟର ସହ ବୋଲିବା ତେବେ ।

## ସେତେବେଳେ କାହାର ନିଦିଧ୍ୟାସନ କରିବା ?

**ପ୍ରଶ୍ନକର୍ତ୍ତା :** ତ୍ରିମନ୍ତ୍ର ବୋଲିବା ସମୟରେ ପ୍ରତ୍ୟେକ ପଂକ୍ତିରେ କାହାର ନିଦିଧ୍ୟାସନ କରିବା ଉଚିତ, ଏହା ବିସ୍ତାରରେ କୁହନ୍ତୁ ।

**ଦାଦାଶ୍ରୀ :** ଅଧ୍ୟାତ୍ମକୁ ନେଇ ତୁମକୁ କାହା ଉପରେ ପ୍ରେମ ଆସିଛି ? ପ୍ରେମର ଉଛାଳ ତୁମକୁ ଆସିଛି କାହାରି ଉପରେ ? କାହା ଉପରେ ଆସିଛି ?

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ପ୍ରତି, ଦାଦାଜୀ ।

**ଦାଦାଶ୍ରୀ :** ତେବେ ତାଙ୍କର ହିଁ ଧ୍ୟାନ କରିବ । ଯାହା ପ୍ରତି ଉଛାଳ ଆସେ, ତାଙ୍କର ଧ୍ୟାନ କରିବ ।

## ଉପଯୋଗପୂର୍ବକ କରିବା ଦ୍ୱାରା ସମ୍ପୂର୍ଣ୍ଣ ଫଳ

ଲୋକେ ତ ନବକାର ମନ୍ତ୍ର ନିଜ ଭାଷାରେ ନେଇଗଲେ । ମହାବୀର ଭଗବାନ ଏପରି କହିଥିଲେ ଯେ ଏହାକୁ କୌଣସି ପ୍ରାକୃତ ଭାଷାରେ ନେଇଯିବ ନାହିଁ, ଅର୍ଦ୍ଧମାଗଧୀ

ଭାଷାରେ ରହିବାକୁ ଦେବ । ତାହାର ଏହି ଲୋକମାନେ କ'ଣ ଅର୍ଥ କଲେ ଯେ ପ୍ରତିକ୍ରମଣ ଅର୍ଧମାଗଧୀ ଭାଷାରେ ହିଁ ରଖିଲେ ଏବଂ ଏହି ମନ୍ତ୍ରର ଶବ୍ଦମାନଙ୍କର ଅର୍ଥ ବାହାର କରିଚାଲିଲେ ! ପ୍ରତିକ୍ରମଣ ସେଥିରେ ତ 'କ୍ରମଣ' ଅଛି ଏବଂ ଏହା ତ ମନ୍ତ୍ର ଅଟେ । ଯଦି ପ୍ରତିକ୍ରମଣ ପ୍ରକୃତ ରୀତିରେ ନ ବୁଝାଯାଏ ତେବେ ସେ (ଗୋଟିଏ ପଟେ) ଗାଳି ଦେଇ ଚାଲିଥାନ୍ତି ଏବଂ (ଅନ୍ୟ ପଟେ) ପ୍ରତିକ୍ରମଣ କରୁଥାନ୍ତି !

କଥାକୁ ବୁଝିଲେ ନାହିଁ ଏବଂ କିଭଳି-କିଭଳି ଦୁରାଗ୍ରହ ସହ ବୋଲୁଛନ୍ତି । ଏହା ତ୍ରିମନ୍ତ୍ର ଅଟେ, କିଭଳି ବି ପାଗଳ ମଣିଷ ଯଦି ବୋଲିବ ତେବେ ମଧ୍ୟ ଏହାର ଫଳ ପାଇବ । ତଥାପି ଅର୍ଥ ବୁଝି ପଢ଼ିବା ତେବେ ଭଲ ।

ଏହି ନବକାର ମନ୍ତ୍ର ବି ଭଗବାନଙ୍କ ସମୟରୁ ଅଛି ଏବଂ ବିଲକୁଲ ଠିକ୍ ଅଟେ, ମାତ୍ର ନବକାର ମନ୍ତ୍ର ବୁଝାପଡ଼ିବା ଦରକାର ନା ? ତାହାର ଅର୍ଥ ବୁଝିଲେ ନାହିଁ ଏବଂ ଗାଇ ଚାଲିଛନ୍ତି । ସେଥିପାଇଁ ତାହାର ଯେଭଳି ଲାଭ ମିଳିବା ଉଚିତ ସେଭଳି ମିଳୁନାହିଁ । କିନ୍ତୁ ତଥାପି ଖସି ଯାଇନାହାନ୍ତି, ସେତିକି ଭଲ । ନହେଲେ ନବକାର ମନ୍ତ୍ର ତ ତାହାକୁ କୁହାଯିବ ଯେ ଯେଉଁଠି ନବକାର ମନ୍ତ୍ର ଅଛି ସେଠାରେ ଚିନ୍ତା କାହିଁକି ହେବ ? କିନ୍ତୁ ଏବେ ବିଚରା ନବକାର ମନ୍ତ୍ର କ'ଣ କରିବ, ଯେତେବେଳେ ଆରାଧକ ହିଁ ତେଢ଼ା !

କଥାରେ ଅଛି ନା ଯେ 'ମାଳା ବିଚରା କ'ଣ କରିବ, ଜପିବାବାଲା ତ ଶୁଆ !' ଏପରି ଅଟେ ନା ?

ଏହି ମନ୍ତ୍ର ସମସ୍ତେ ବୋଲନ୍ତି, ସେଥିରୁ କେତେଜଣ ଉପଯୋଗପୂର୍ବକ ବୋଲନ୍ତି, ଟିକିଏ ପଚାରି ଆସ ? ମାଳା ଜପନ୍ତି, ସେତେବେଳେ କେତେ ଲୋକ ଉପଯୋଗପୂର୍ବକ ମାଳା ଜପନ୍ତି ? ତେବେ ପୁଣି ଶୀଘ୍ର ସାରିବା ପାଇଁ 'ଦୌଡ଼ ମୋତି, ମୋତି ଆସିଲା; ଦୌଡ଼ ମୋତି, ମୋତି ଆସିଲା' କରନ୍ତି । ଏବଂ ସେଥିପାଇଁ ମୁଣି ତିଆରି କଲେ । ଖୋଲାଖୋଲି ତ ଘୋଟାଲା କରିପାରିବେ ନାହିଁ ନା ?

ଭଗବାନ କ'ଣ କହିଛନ୍ତି ଯେ, ତୁ 'ଯାହା-ଯାହା କରିବୁ, ମାଳା ଜପିବୁ, ନବକାର ମନ୍ତ୍ର ବୋଲିବୁ, ତାହା ଉପଯୋଗପୂର୍ବକ ଯଦି କରିବୁ ତେବେ ତାହାର ଫଳ ପ୍ରାପ୍ତ ହେବ, ନହେଲେ ଅବୁଝାଙ୍କ ପରି କରିଲେ ତ 'କାଚ' ନେଇ ହିଁ ଘରକୁ ଯିବୁ ଏବଂ ଅସଲି ହିରା ତୋ ହାତରେ ଲାଗିବ ନାହିଁ । ଉପଯୋଗବାଲାକୁ ହିରା ଏବଂ ଉପଯୋଗ ନାହିଁ ତା'କୁ କାଚ । ଆଉ ଆଜି ଉପଯୋଗବାଲା କେତେ ଅଛନ୍ତି, ତାହା ତୁମେ ଖବର କରିନେବ ।

## ଦ୍ରବ୍ୟପୂଜା ଏବଂ ଭାବପୂଜାବାଲାଙ୍କ ପାଇଁ

ଏ ସାଧୁ-ଆଚାର୍ଯ୍ୟ ପଚାରନ୍ତି ଯେ, ଏହି ନବକାର ମନ୍ତ୍ର ଏବଂ ଅନ୍ୟ ମନ୍ତ୍ର ସାଥିରେ ବୋଲିବାର କାରଣ କ'ଣ ? କେବଳ ନବକାର ବୋଲିବାରେ କ'ଣ ଅସୁବିଧା ? ମୁଁ କହିଲି, 'ଜୈନ କେବଳ ନବକାର ମନ୍ତ୍ର ବୋଲିପାରିବେ ନାହିଁ । କେବଳ ନବକାର ମନ୍ତ୍ର କିଏ ବୋଲିପାରିବ ? ଯିଏ ତ୍ୟାଗୀ ଅଟେ, ଯାହାକୁ ସଂସାର ସହ କିଛି ନେବା-ଦେବା ନାହିଁ, ଝିଅମାନଙ୍କର ବାହାଘର କରିବାର ନାହିଁ, ପୁଅର ବାହାଘର କରିବାର ନାହିଁ, ସେମାନେ କେବଳ ନବକାର ବୋଲିପାରିବେ ।'

ଲୋକେ ଦୁଇ ହେତୁ ନେଇ ମନ୍ତ୍ର ବୋଲନ୍ତି । ଯେଉଁ ଭାବପୂଜାବାଲା ଅଛନ୍ତି ସେମାନେ ପ୍ରଗତି ପାଇଁ ବୋଲନ୍ତି ଏବଂ ଅନ୍ୟମାନେ ଏହି ସଂସାରର ଯେଉଁ ବାଧାବିଘ୍ନ ଅଛି ତାହା କମ୍ କରିବା ପାଇଁ ବୋଲନ୍ତି । ଅର୍ଥାତ ଯେଉଁ ସାଂସାରିକ ବିଘ୍ନବାଲା ଅଛନ୍ତି ସେ ସମସ୍ତଙ୍କୁ ଦେବଲୋକର କୃପା ଦରକାର । ଏଣୁ ଯିଏ କେବଳ ଭାବପୂଜା କରୁଥିବେ, ଦ୍ରବ୍ୟପୂଜା କରୁନଥିବେ, ସେମାନେ କେବଳ ଏହି ଗୋଟିଏ ମନ୍ତ୍ର ବୋଲିପାରନ୍ତି । ଆଉ ଯିଏ ଦ୍ରବ୍ୟପୂଜା ଏବଂ ଭାବପୂଜା ଉଭୟ କରନ୍ତି, ସେମାନଙ୍କୁ ସବୁ ମନ୍ତ୍ର ସାଥିରେ ବୋଲିବା ଉଚିତ ।

ମୂର୍ତ୍ତିର ଭଗବାନ ଦ୍ରବ୍ୟ ଭଗବାନ ଅଟନ୍ତି, ଦ୍ରବ୍ୟ ମହାବୀର ଅଟନ୍ତି ଆଉ ଏ ଭିତରେ ଭାବ ମହାବୀର ଅଛନ୍ତି । ତାଙ୍କୁ ତ ମୁଁ ମଧ୍ୟ ନମସ୍କାର କରେ ।

## ମନକୁ ତରେ ମନ୍ତ୍ର

ଯେପର୍ଯ୍ୟନ୍ତ ମନ ଅଛି, ସେପର୍ଯ୍ୟନ୍ତ ମନ୍ତ୍ରର ଆବଶ୍ୟକତା ଅଛି ଏବଂ ମନ ଅନ୍ତ ପର୍ଯ୍ୟନ୍ତ ରହିବାବାଲା ଅଟେ । ଯେପର୍ଯ୍ୟନ୍ତ ଶରୀର ଅଛି, ସେପର୍ଯ୍ୟନ୍ତ ମନ ଅଛି । ମନ୍ତ୍ର ଇଟ୍‌ସେଲ୍ଫ (ସ୍ୱୟଂ) କହେ ଯେ ମନକୁ ତରିବାର ଥିବ ତେବେ ମନ୍ତ୍ର ବୋଲ । ମନକୁ ଖୁସି କରିବା ପାଇଁ ଏହା ସୁନ୍ଦର ରାସ୍ତା ଅଟେ ।

ଅର୍ଥାତ ତାହାର ରଚନା ହିଁ ଏତେ ଉତ୍ତମ ଯେ ତୁମେ ଯଦି ମନ୍ତ୍ର ବୋଲିବ ତେବେ ତାହାର ଫଳ ପ୍ରାପ୍ତ ନହୋଇ ରହେ ନାହିଁ ।

## ତ୍ରିମନ୍ତ୍ରର ଭଜନା କେଉଁଠି ବି

**ପ୍ରଶ୍ନକର୍ତ୍ତା :** ମାନସିକ ଭାବେ ତ୍ରିମନ୍ତ୍ର କୌଣସି ବି ସମୟରେ ଏବଂ କୌଣସି ବି ଜାଗାରେ କରାଯାଇ ପାରିବ ନା ନାହିଁ ?

**ଦାଦାଶ୍ରୀ :** ନିଶ୍ଚିତ । କୌଣସି ବି ସମୟରେ କରାଯାଇ ପାରେ । ତ୍ରିମନ୍ତ୍ର ତ ପାଇଖାନାରେ ବି ବୋଲିପାରିବା । କିନ୍ତୁ ଏପରି କହିଲେ ଲୋକେ ଦୁରୂପଯୋଗ କରିବେ ଏବଂ ପୁଣି ସେମାନେ ପାଇଖାନାରେ ହିଁ କରିଚାଲିବେ । ଏପରି ବୁଝିବେ ନାହିଁ ଯେ କେଉଁ ଦିନ ଅସୁବିଧା ଥିବ ଏବଂ ସମୟ ମିଳିଲା ନାହିଁ, ତେବେ ପାଇଖାନାରେ କରିଲେ ସେ କଥା ଅଲଗା । ଅର୍ଥାତ ଲୋକେ ଏହି କଥାକୁ ଓଲଟା ଧରିନେବେ । ସେଥିପାଇଁ ଏହି ଲୋକମାନଙ୍କ ପାଇଁ ନିୟମ ରଖିବାକୁ ପଡ଼େ, ତଥାପି ମୁଁ କୌଣସି ନିୟମ ରଖୁନାହିଁ ।

## ନବକାର ମନ୍ତ୍ରର ସର୍ଜକ କିଏ ?

**ପ୍ରଶ୍ନକର୍ତ୍ତା :** ନବକାର ମନ୍ତ୍ରର ସର୍ଜକ କିଏ ?

**ଦାଦାଶ୍ରୀ :** ଏହା କିଛି ଆଜିର ପ୍ରୋଜେକ୍ଟ ନୁହେଁ । ଏହା ତ ପ୍ରଥମରୁ ହିଁ ଅଛି, କିନ୍ତୁ ଅନ୍ୟ ରୂପରେ ଥିଲା । ଅନ୍ୟ ରୂପରେ ଅର୍ଥାତ ଭାଷାରେ ଅଦଳ-ବଦଳ କିନ୍ତୁ ଅର୍ଥ ତାହାକୁ ତାହା ଚାଲିଆସୁଛି ।

## ତ୍ରିମନ୍ତ୍ରରେ କେହି ମନିଟର୍ ନାହିଁ

**ପ୍ରଶ୍ନକର୍ତ୍ତା :** ଏହି ସବୁ ମନ୍ତ୍ରରେ କେହି ମୁଖିଆ, ମନିଟର୍ ତ ଥିବ ନା ?

**ଦାଦାଶ୍ରୀ :** କେହି ମନିଟର୍ ନାହାନ୍ତି । ମନ୍ତ୍ରରେ ମନିଟର୍ ନଥାନ୍ତି । ମନିଟର୍ ତ, ଲୋକେ ନିଜ-ନିଜ ମନିଟର୍ ପରେ ବନାନ୍ତି ଯେ, ଇଏ 'ମୋ ମନିଟର୍' ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଯଦି ମୁଁ ସମସ୍ତଙ୍କୁ କହିବି ଯେ 'ଆପଣ ମୋ କାମ କରିବେ' ପୁଣି ଅନ୍ୟଙ୍କୁ କହିବି ଯେ 'ଆପଣ ମୋ କାମ କରିବେ' ତେବେ ମୋ କାମ କରିବ କିଏ ?

**ଦାଦାଶ୍ରୀ :** ଯେଉଁଠି ନିଷ୍ପକ୍ଷପାତୀ ସ୍ୱଭାବ ଥାଏ ସେଠି ସମସ୍ତେ କାମ କରିବା ପାଇଁ ପ୍ରସ୍ତୁତ ରହନ୍ତି । ସମସ୍ତେ କୁ ସମସ୍ତେ ! ଗୋଟିଏ ପକ୍ଷର ହେଲା, ମାନେ ତୁରନ୍ତ ଅନ୍ୟମାନେ ବିରୋଧୀ ହୋଇଯାନ୍ତି । କିନ୍ତୁ ଯଦି ନିଷ୍ପକ୍ଷତା ଥିବ ତେବେ ସମସ୍ତେ କାମ କରିବା ପାଇଁ ପ୍ରସ୍ତୁତ ହୋଇଯାନ୍ତି । କାହିଁକିନା ସେମାନେ ବହୁତ ନୋବଲ୍ ଅଟନ୍ତି । ଏହା ତ ଆମେ ନିଜର ସଙ୍କୁଚିତତାକୁ ନେଇ ସେମାନଙ୍କୁ ସଙ୍କୁଚିତ କରନ୍ତି । ନିଷ୍ପକ୍ଷତା ଦ୍ୱାରା ସବୁକାମ ହୁଏ । ଏଠାରେ କେବେ ଅସୁବିଧା ଆସି ନାହିଁ । ଆମର ଏଠି ଚାଳିଶ ହଜାର ଲୋକ ଏହି ତ୍ରିମନ୍ତ୍ର ବୋଲନ୍ତି, କାହାରିକୁ କୌଣସି ଅସୁବିଧା ଆସିନାହିଁ । ତିଳେମାତ୍ର ବି ଅସୁବିଧା ଆସେ ନାହିଁ ।

## କାମ କରେ ଏପରି ଏ ଔଷଧ !

**ପ୍ରଶ୍ନକର୍ତ୍ତା :** ତିନି ମନ୍ତ୍ର ସାଥିରେ ବୋଲିବୁ ତେବେ ତାହା ଭଲ । ତାହା ଧର୍ମର ସମଭାବ ଏବଂ ସଦ୍‌ଭାବ ପାଇଁ ଭଲ କଥା ଅଟେ ।

**ଦାଦାଶ୍ରୀ :** କାମ କରେ ଏପରି ଔଷଧ ସେଥିରେ ନିହିତ ଅଛି ।

ଯାହାଙ୍କୁ ଝିଅମାନଙ୍କ ବିବାହ କରିବାର ଅଛି, ପୁଅର ବିବାହ କରିବାର ଅଛି, ସାଂସାରିକ ଦାୟିତ୍ୱ ଏବଂ କର୍ତ୍ତବ୍ୟ ପାଳନ କରିବାର ଅଛି, ତାଙ୍କୁ ସବୁ ମନ୍ତ୍ର ବୋଲିବାକୁ ପଡ଼ିବ । ଆରେ, ନିଷ୍ପକ୍ଷପାତୀ ମନ୍ତ୍ର ବୋଲ ! ପକ୍ଷପାତରେ କେଉଁଠି ଯାଇ ପଡ଼ିଛୁ ?

ଏହି ନବକାର ମନ୍ତ୍ର କାହାର ମାଲିକତ୍ୱ ଭାବବାଲା ଅଟେ କି ? ଏହା ତ ଯିଏ ନବକାର ମନ୍ତ୍ର ଭଜିବ ତା'ର ଅଟେ । ଯେଉଁ ମନୁଷ୍ୟ ପୁନର୍ଜନ୍ମ ବୁଝିବାକୁ ଲାଗିଲାଣି ତା' ପାଇଁ କାମର ଅଟେ । ଯେଉଁମାନେ ପୁନର୍ଜନ୍ମ ବୁଝନ୍ତି ନାହିଁ, ଏପରି ଲୋକଙ୍କ ପାଇଁ ଏହା କୌଣସି କାମର ନୁହେଁ । ହିନ୍ଦୁସ୍ତାନର ଲୋକଙ୍କ ପାଇଁ ଏହି କଥା କାମର ଅଟେ ।

## ସମସ୍ତ ମନ୍ତ୍ର କ୍ରମିକରେ ଅଛନ୍ତି

**ପ୍ରଶ୍ନକର୍ତ୍ତା :** ଯେଉଁ ନବକାର ମନ୍ତ୍ର ଅଛି ତାହା କ୍ରମିକର ମନ୍ତ୍ର ଅଟେ ନା ?

**ଦାଦାଶ୍ରୀ :** ହଁ, ସବୁ କ୍ରମିକ ଅଟେ ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ଏଠି ଅକ୍ରମ ମାର୍ଗରେ ତାହାକୁ ଏତେ ସ୍ଥାନ କାହିଁକି ଦିଆଯାଇଛି ?

**ଦାଦାଶ୍ରୀ :** ତାହାର ସ୍ଥାନ ତ ବ୍ୟାବହାରିକ ରୂପରେ ଅଟେ । ଏବେ ତୁମେ ବ୍ୟବହାରରେ ରହୁଛ ନା ? ଏବଂ ବ୍ୟବହାର ଶୁଦ୍ଧ କରିବାର ଅଛି ନା ? ତେବେ ଏହି ମନ୍ତ୍ର ତୁମକୁ ବ୍ୟବହାରରେ ବାଧା ଆସିବାକୁ ଦେବ ନାହିଁ । ଯଦି ତୁମକୁ ବ୍ୟାବହାରିକ ବାଧାବିଘ୍ନ ଆସୁଥିବ ତେବେ ଏହି ମନ୍ତ୍ର ଦ୍ୱାରା କମ୍ ହୋଇଯିବ ।

ସେଥିପାଇଁ ତୁମକୁ ଏହି ତ୍ରିମନ୍ତ୍ରର ରହସ୍ୟ ବୁଝାଇଲି । ଏହା ଆଗକୁ ବିଶେଷ କିଛି ଜାଣିବାର ଆବଶ୍ୟକତା ରହେ ନାହିଁ !

**- ଜୟ ସଚ୍ଚିଦାନନ୍ଦ**

## ମୂଳ ଗୁଜରାଟୀ ଶବ୍ଦର ସମାନାର୍ଥୀ ଶବ୍ଦ

| | | |
|---|---|---|
| ଷଡ଼ରିପୁ | : | ଛଅ ଶତ୍ରୁ |
| *ଭୋଗବଟା* | : | ସୁଖ-ଦୁଃଖର ପ୍ରଭାବ |
| *ଆଚାର* | : | ଆଚରଣ |
| ରାଗ୍ | : | ଆସକ୍ତି |
| *ଭାନ୍* | : | ଚେତନା, ହୋସ |
| ଦେଶନା | : | ତୀର୍ଥଙ୍କର ଏବଂ ଭେଦବିଜ୍ଞାନୀଙ୍କ ମୁଖନିଃସୃତ ବାଣୀ |
| ବୀତରାଗ | : | ରାଗ୍-ଦ୍ୱେଶ ରହିତ |
| ପ୍ରତୀତି | : | ଦୃଷ୍ଟିରେ ଆସିବା |
| ଦେହାଧ୍ୟାସ | : | ଦେହପ୍ରତି ମମତ୍ୱ ଭାବ |
| ଜହର | : | ବିଷ |
| ମୋତି | : | କଣ୍ଢି, ମାଳାର ମାଳି |
| ବ୍ୟବସ୍ଥିତ | : | ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ |

## ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରକାଶିତ ପୁସ୍ତକ

### ହିନ୍ଦୀ

୧. ଜ୍ଞାନୀପୁରୁଷଙ୍କ ପରିଚୟ
୨. ସର୍ବ ଦୁଃଖରୁ ମୁକ୍ତି
୩. କର୍ମର ସିଦ୍ଧାନ୍ତ
୪. ଆତ୍ମବୋଧ
୫. ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ
୬. ଦାଦା ଭଗବାନ କିଏ ?
୭. ଲକ୍ଷ୍ମୀ ର ବ୍ୟବହାର
୮. ଅନ୍ତଃକରଣ ର ସ୍ୱରୂପ
୯. ଜଗତ କର୍ତ୍ତା କିଏ ?
୧୦. ପ୍ରେମ
୧୧. ସମଝ ରୁ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ସଂ.)
୧୨. ଦାନ
୧୩. ନିଜଦୋଷ ଦର୍ଶନ ରୁ... ନିର୍ଦ୍ଦୋଷ
୧୪. ପତି-ପତ୍ନୀଙ୍କ ଦିବ୍ୟ ବ୍ୟବହାର
୧୫. କ୍ଳେଶ ରହିତ ଜୀବନ
୧୬. ଗୁରୁ-ଶିଷ୍ୟ
୧୭. ଅହିଂସା
୧୮. ସତ୍ୟ-ଅସତ୍ୟ ର ରହସ୍ୟ
୧୯. ଚମତ୍କାର
୨୦. ପାପ-ପୁଣ୍ୟ
୨୧. ବାଣୀ, ବ୍ୟବହାରରେ...
୨୨. କର୍ମର ବିଜ୍ଞାନ
୨୩. ସହଜତା
୨୪. ଆପ୍ତବାଣୀ - ୧
୨୫. ଆପ୍ତବାଣୀ - ୨
୨୬. ଆପ୍ତବାଣୀ - ୩
୨୭. ଆପ୍ତବାଣୀ - ୪
୨୮. ଆପ୍ତବାଣୀ - ୫
୨୯. ଆପ୍ତବାଣୀ - ୬
୩୦. ଆପ୍ତବାଣୀ - ୭
୩୧. ଆପ୍ତବାଣୀ - ୮
୩୨. ଆପ୍ତବାଣୀ - ୯
୩୩. ଆପ୍ତବାଣୀ - ୧୩ (ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ)
୩୪. ଆପ୍ତବାଣୀ - ୧୪ (ଭାଗ-୧)
୩୫. ସମଝ ରୁ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ)
୩୬. ଜ୍ଞାନୀ ପୁରୁଷ

**ଓଡ଼ିଆ ପୁସ୍ତକ:**

୧. ଆତ୍ମସାକ୍ଷାତ୍କାର
୨. ଘର୍ଷଣ ଟାଳନ୍ତୁ
୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୫. ଚିନ୍ତା
୬. ମାନବ ଧର୍ମ
୭. କ୍ରୋଧ
୮. ଯାହା ହେଲା ତାହା ନ୍ୟାୟ
୯. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୦. ଯିଏ ଭୋଗେ ତା'ର ଭୁଲ
୧୧. ସେବା ପରୋପକାର
୧୨. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୩. ପ୍ରତିକ୍ରମଣ
୧୪. ଭାବନା ସୁଧାରେ ଜନ୍ମୋଜନ୍ମ
୧୫. ତ୍ରିମନ୍ତ୍ର

★ **ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ www.dadabhagwan.org ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।**

★ **ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।**

★ **ଉପରୋକ୍ତ ଓଡ଼ିଆ ପୁସ୍ତକ ହିନ୍ଦୀ ଭାଷାରେ ମଧ୍ୟ ଉପଲବ୍ଧ ।**

# ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର

| | | |
|---|---|---|
| ଅଡ଼ାଲଜ | : | **ତ୍ରିମନ୍ଦିର**, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮ ୨୪୨୧,ଫୋନ-(୦୭୯)୩୯୮୩୦୧୦୦ |
| ରାଜକୋଟ | : | **ତ୍ରିମନ୍ଦିର**, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋଷ୍ଟ-ମାଲିୟାସଣ,ଜିଲ୍ଲା-ରାଜକୋଟ, ଫୋନ-୯୯୨୪୩୪୩୪୭୮ |
| ଭୁଜ୍ | : | **ତ୍ରିମନ୍ଦିର**, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼.ଫୋନ-(୦୨୮୩୨) ୨୯୦୧୨୩ |
| ଅଞ୍ଜାର | : | **ତ୍ରିମନ୍ଦିର**, ଅଞ୍ଜାର-ମୁନ୍ଦ୍ର ରୋଡ,ସୀନୋଗ୍ରା ପାଟୀୟା ପାଖ,ସୀନୋଗ୍ରା ଗାଁ, ତା.-ଅଞ୍ଜାର,ଫୋନ-୯୯୨୪୩୪୬୬୨୨ |
| ମୋର୍‌ବୀ | : | **ତ୍ରିମନ୍ଦିର,** ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭ |
| ସୁରେନ୍ଦ୍ରନଗର | : | **ତ୍ରିମନ୍ଦିର,** ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକବିଦ୍ୟାଳୟ ପାଖ, ମୂଳି ରୋଡ, ୯୭୩୭୦୪୮୩୨୨ |
| ଅମ୍‌ରେଲୀ | : | **ତ୍ରିମନ୍ଦିର,** ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦ |
| ଗୋଧ୍ରା | : | **ତ୍ରିମନ୍ଦିର,** ଭାମେୟା ଗାଁ, ଏଫ ସି ଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦ |
| ବଡ଼ୋଦରା | : | ବାବରୀୟା କଲେଜ ପାଖ,ବଡ଼ୋଦରା-ସୁରଟ ହାଇୱେ,NH-8, ବରଣାମା ଗାଁ. ଫୋନ-୯୫୭୪୦୦୧୫୫୭ |
| ଅହମଦାବାଦ | : | **ଦାଦା ଦର୍ଶନ,** ୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ କୋଲେଜ ପାଖ, ଉସ୍ମାନପୁର,ଅହମଦାବାଦ-୩୮୦୦୧୪,ଫୋନ-(୦୭୯) ୨୭୫୪୦୪୦୮ |
| ବଡ଼ୋଦରା | : | ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟୱାଡ଼ା, ବଡ଼ୋଦରା,ଫୋନ-୯୯୨୪୩୪୩୩୩୫ |

---

| | | | |
|---|---|---|---|
| **ମୁମ୍ବାଇ** | : ୯୩୨୩୫୨୮୯୦୧ | **ଦିଲ୍ଲୀ** | : ୯୮୧୦୦୯୮୫୬୪ |
| **କୋଲକତା** | : ୯୮୩୦୦୯୩୨୩୦ | **ଚେନ୍ନାଇ** | : ୯୩୮୦୧୫୯୯୫୭ |
| **ଜୟପୁର** | : ୯୩୫୧୪୦୮୨୮୫ | **ଭୋପାଲ୍** | : ୯୪୨୫୦୨୪୪୦୫ |
| **ଇନ୍ଦୋର** | : ୯୦୩୯୯୩୬୧୭୩ | **ଜବଲପୁର** | : ୯୪୨୫୧୬୦୪୨୮ |
| **ରାୟପୁର** | : ୯୩୨୯୬୪୪୪୩୩ | **ଭିଲାଇ** | : ୯୮୨୭୪୮୧୩୩୬ |
| **ପାଟନା** | : ୭୩୫୨୭୨୩୧୩୨ | **ଅମରାବତୀ** | : ୯୪୨୨୯୧୫୦୬୪ |
| **ବାଙ୍ଗାଲୋର** | : ୯୫୯୦୯୭୯୦୯୯ | **ହାଇଦ୍ରାବାଦ** | : ୯୯୮୯୮୭୭୭୮୬ |
| **ପୁନେ** | : ୯୪୨୨୬୬୦୪୯୭ | **ଜଲନ୍ଧର** | : ୯୮୧୪୦୬୩୦୪୩ |
| **ଓଡିଶା** | : ୮୭୬୩୦୭୩୧୧୧ | | |

---

**U.S.A.: DBVI, Tel . :**+1 877-505-DADA (3232)

**Email :** info@us.dadabhagwan.org

| | | | |
|---|---|---|---|
| **U.K. :** | +44 330-111-DADA (3232) | **UAE** | : +971 557316937 |
| **Kenya :** | +254 722 722 063 | **Singapore** | : +65 81129229 |
| **Australia :** | +61 421127947 | **New Zealand** | : +64 21 0376434 |

**Website : www.dadabhagwan.org**

# ତ୍ରିମନ୍ତ୍ର

ନମୋ ଅରିହନ୍ତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ବସାହୂଣଂ

ଏସୋ ପଞ୍ଚ ନମୁକ୍କାରୋ,

ସବ୍ବ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ବେସିଂ,

ପଢମଂ ହବଇ ମଙ୍ଗଲମ୍ ॥୧ ॥

ନମୋ ଭଗବତେ ବାସୁଦେବାୟ ॥୨ ॥

ନମଃ ଶିବାୟ ॥୩ ॥

ଜୟ ସଚ୍ଚିଦାନନ୍ଦ

dadabhagwan.org

9 789387 551534

Printed in India

Price ₹20